# ଉତ୍କଳ ବ୍ରାହ୍ମଣ ସମିତିର ପଞ୍ଚମ ବାର୍ଷିକ ବିବରଣ ।

"ଯତ୍ର ଯୋଗେଶ୍ୱରଃ କୃଷ୍ଣୋ ଯତ୍ର ପାର୍ଥୋ ଧନୁର୍ଦ୍ଧରଃ
ତତ୍ର ଶ୍ରୀର୍ବିଜୟୋ ଭୂତିର୍ଧ୍ରୁବା ନୀତିର୍ମତିର୍ମମ ।"

Printed by G. N. Mishra

at the Jagannath Press

Puri

1905

ଶ୍ରୀ କାଶୀନାଥ ମହାପାତ୍ର

ସମ୍ପାଦକ ।

# ଉତ୍କଳ ବ୍ରାହ୍ମଣ ସମିତିର ପଞ୍ଚମ ବାର୍ଷିକ ବିବରଣୀ ।



ସୂଚନା ।—

ଦିନ ଯାଉଅଛି, ମାସ ଯାଉଅଛି, ବର୍ଷ ଯାଉଅଛି, ସମୟସ୍ରୋତ ନିରନ୍ତର ବହି ଯାଇ ମହାକାଳସମୁଦ୍ରରେ ମିଶୁଅଛି; ଶତ ମନୋରଥ-ବୁଦ୍‌ବୁଦ୍ ତୁଲ୍ୟ ପ୍ରତି ନିମିଷରେ ସେହି ସ୍ରୋତରେ ଲୀନ ହେଉଅଛି; ସହସ୍ର କଳ୍ପନା କେବଳ କଳ୍ପନାରେ ପର୍ଯ୍ୟବସିତ ହେଉଅଛି; ମନୁଷ୍ୟ ହୃଦୟରେ କେତେ କେତେ ଭାବ ଉଦିତ ହେଉଅଛି; ଅଧିକାଂଶ କ୍ଷଣପ୍ରଭା ତୁଲ୍ୟ "ଉତ୍ଥାୟ ହୃଦି ଲୀୟନ୍ତେ ଦରିଦ୍ରାଣାଂ ମନୋରଥାଃ" । କିନ୍ତୁ ସଦ୍‌ଭାବ, ଦିବ୍ୟକଳ୍ପନା ସାଧୁ ମନୋରଥ ଥରେ କାହାର ଚିନ୍ତାକ୍ଷେତ୍ରରେ ଅଙ୍କୁରିତ ହେଲେ ସହଜରେ ବିଲୟ ପାଏ ନାହିଁ । ତହିଁର ଅଭିପ୍ରକାଶ ନ ହୋଇପାରେ; ସମୟସ୍ରୋତର ବେଳାଭୂମିରେ ତାହା ବହୁଦିନ ସିକତାବୃତ ହୋଇ ରହିପାରେ; କିନ୍ତୁ ତହିଁର ସତ୍ତା କଦାପି ବିଲୁପ୍ତ ହୁଏନାହିଁ । ହିମାଳୟର ତୁଲ୍ୟ ଦୃଢ଼ ଦମ୍ଭ ଅନୁଷ୍ଠାନମାନ କାଳସ୍ରୋତ ଭସାଇ ନିଏ ସତ୍ୟ କିନ୍ତୁ ଏ ସାମାନ୍ୟ କ୍ଷୀଣ କୋମଳ ଅଙ୍କୁର ଅକ୍ଷୁଣ୍ଣ ରହିଥାଏ । ସତ୍ୟନିଷ୍ଠା ଏ ଅଙ୍କୁରର ମୂଳ, ପବିତ୍ରତା ଏଥିର ରସ, ବିଶ୍ୱାସ ଜୀବନୀ ଶକ୍ତି । ଏହି ଭାବସକଳ ଯେତେଦିନ ଜାଗ୍ରତ ଥାଏ ନିଜର ସାଧୁ ଲକ୍ଷ ସାଧନ ନ କରି ଏ ଅଙ୍କୁର ବିନଷ୍ଟ ହୁଏ ନାହିଁ । ପ୍ରାୟ ଦଶବର୍ଷ ପୂର୍ବେ ଶ୍ରୀଯୁକ୍ତ ମଧୁସୂଦନ ଦାଶ ବି ଏ ଓ ପଣ୍ଡିତ ଶ୍ରୀ ନୀଳକଣ୍ଠମିଶ୍ର ମହାଶୟ ଦ୍ୱୟ ବ୍ରାହ୍ମଣମାନଙ୍କର ଦୁରବସ୍ଥା ନିରାକରଣ ଉଦ୍ଦେଶ୍ୟରେ ଅର୍ଥ ସଂଗ୍ରହ କରି ଗୋଟିଏ ପାଣ୍ଠି ଗଠନର ପ୍ରସ୍ତାବ କରି ଅଧିକାଂଶ ଶିକ୍ଷିତ ସଦସ୍ୟ ବ୍ରାହ୍ମଣମାନଙ୍କ ନିକଟକୁ ପତ୍ର ଲେଖିଥିଲେ; କିନ୍ତୁ ତତ୍‌ପ୍ରତି ସେ ସମୟରେ କାହାର ମନୋଯୋଗ

ଅନୁଷ୍ଠିତ ହୋଇ ନ ଥିଲା । ସେ କଳ୍ପନା କେବଳ କଳ୍ପନାରେ ଶେଷ ହୋଇଥିଲା । କିନ୍ତୁ ସବଳଭାବପ୍ରଣୋଦିତ ସାଧୁ କଳ୍ପନା କଦାପି ଏକାବେଳକେ ବିଲୁପ୍ତ ହୁଏନାହିଁ । ଉପଯୁକ୍ତ ସମୟ ସୁଯୋଗ ଉପସ୍ଥିତ ହେଲେ ତାହା ପୁନର୍ବାର ନୂତନ ତେଜ-ପୁଞ୍ଜରେ ପ୍ରକାଶପାଏ ।

ସନ ୧୮୯୯ ମସିହାର ପାର୍ବଣ ଅବକାଶରେ ଶ୍ରୀଯୁକ୍ତ ରାମଚନ୍ଦ୍ର ଦାଶ ପ୍ରମୁଖ କେତେକ ଶିକ୍ଷିତ ବ୍ରାହ୍ମଣ ଯୁବକ ବ୍ରାହ୍ମଣଶାସନରେ ବୁଲି ବ୍ରାହ୍ମଣମାନଙ୍କର ଦୁରବସ୍ଥା ଦର୍ଶନରେ ଅତ୍ୟନ୍ତ ମର୍ମାହତ ହେଲେ । ଦେଖିଲେ ସେହି "ନାରିକେଳ ପୂଗ ପୁନ୍ନାଗଂ ଶ୍ୟାମଳ ଛାୟନ;" ଗ୍ରାମର ସୁନ୍ଦର ଅବସ୍ଥାନ; ସୁନ୍ଦର ପୁଷ୍କରିଣୀ, ସୁନ୍ଦର ଦେବାଳୟ, ଉନ୍ନତ ପ୍ରସ୍ତର ପାବଚ୍ଛ, ଅଟ୍ଟାଳିକାତୁଲ୍ୟ ଉନ୍ନତ କିନ୍ତୁ ପତନୋନ୍ମୁଖ ଗୃହ, ସମସ୍ତ ପ୍ରାଚୀନ ବୈଭବର କ୍ଷୀଣ ଛାୟା ମାତ୍ର । ଏହିପରି କେତେକ ଗ୍ରାମ ବୁଲି ଅବଶେଷରେ ସେହି ପୁରାଣପ୍ରସିଦ୍ଧ ଭୁବନେଶ୍ୱର ଧାମରେ ଦୁଇ ଏକଦିନ ଅବସ୍ଥାନାନନ୍ତର "ବୌଦ୍ଧକୀର୍ତ୍ତିରାଜି" ମଣ୍ଡିତ ଖଣ୍ଡଗିରିଶିଖରରେ ଉପସ୍ଥିତ ହେଲେ । ଅକ୍ଟୋବର ତା ୧୪ ରିଖ ବାସ୍ତବିକ ଗୋଟିଏ ସ୍ମରଣୀୟ ଦିବସ । ଦେଶୋନ୍ନତି ବିଷୟକ ନାନାବିଷୟର କଥୋପକଥନ ପରେ ଅଳ୍ପ ମୁଷ୍ଟିମେୟ ସାମାନ୍ୟ ବ୍ରାହ୍ମଣ କେତେଜଣ ନିଜ ସମାଜ-ଉନ୍ନତିକାମନାରେ ଯଥାଶକ୍ତି ଚେଷ୍ଟା ଏବଂ ଉଦ୍ୟମ କରିବାକୁ ସଂକଳ୍ପ କଲେ । ଏ ଅଟଳ ସଂକଳ୍ପ, ଏହା ଯୌବନର ଉଚ୍ଛୃଙ୍ଖଳତାଜନିତ ନୁହେ । କଳ୍ପନାର ସ୍ୱଚ୍ଛନ୍ଦ ଲୀଳା ଖେଳା ନୁହେ । ସମାଜର ଦୁର୍ଦ୍ଦଶା ସ୍ୱଚକ୍ଷୁରେ ଦର୍ଶନ କରିବାଦ୍ୱାରା ହୃଦୟର ଯେ ଦାରୁଣ ଯନ୍ତ୍ରଣାର ଅନୁଭବ ହୋଇଥିଲା ଏହା ତହିଁର ଫଳ । ସଂକଳ୍ପର ସ୍ଥାନ ଉତ୍କଳଗୌରବାଧାର ସେହି ଶିବକ୍ଷେତ୍ର; ସେହି [illegible] ଦେବାଳୟ; ସେହି ଗିରି ଏବଂ ସେହି ହିନ୍ଦୁବୌଦ୍ଧ ଯୋଗୀବୃନ୍ଦଙ୍କ ଅମର ଆତ୍ମା ଏଥିର ସାକ୍ଷୀ । ଏହା ବ୍ରାହ୍ମଣସଂ[illegible] ପ୍ରସ୍ତାବନା ।

ଉତ୍ପତ୍ତି—

ସନ ୧୮୯୯ ମସିହା ଡିସେମ୍ବର ତା।୮ରିଖ ଶୁକ୍ରବାର ବ୍ରାହ୍ମଣସମି-ତିର ଜନ୍ମଦିବସ । ସମସ୍ତ ହିନ୍ଦୁଜାତିର ସ୍ୱର୍ଗଦ୍ୱାର ସ୍ୱରୂପ ମର୍ତ୍ତ୍ୟବୈକୁଣ୍ଠ ପବିତ୍ର ପୁଣ୍ୟଧାମ ଏହାର ଜନ୍ମସ୍ଥାନ । ମନୋହର ନଦନଦୀ ବନରାଜି ବେଷ୍ଟିତ ବିଜନ ବନ୍ଧୁର ଖଣ୍ଡଗିରି ଗୁମ୍ଫାରେ ଯାହାର ଗର୍ଭାଧାନ ଶ୍ରୀକ୍ଷେତ୍ରରେ ସେ ଜାତ ହେବା ସ୍ୱାଭାବିକ । ଏବେ ଓଡ଼ିଶାରେ କାହିଁକି ଭାରତବର୍ଷରେ ଯେଉଁ ବ୍ରାହ୍ମଣ ପ୍ରଧାନ ସ୍ଥାନ, ବ୍ରାହ୍ମଣମାନଙ୍କ ଧର୍ମ କର୍ମ ପାଣ୍ଡିତ୍ୟ ନୈଷ୍ଠିକତା ଇତ୍ୟାଦି ବଳରେ ଏହା ଦିନେ ପୁନା, ନବ-ଦ୍ୱୀପ, କାଶୀ ପ୍ରଭୃତି ଐତିହାସିକ ବିଦ୍ୟାନଗରୀମାନଙ୍କ ସଙ୍ଗେ ପ୍ରତି-ଯୋଗିତାରେ ସମକକ୍ଷ ହୋଇଥିଲା । ଆଜି ସେହି ନଗରୀରେ ସେହି ବଂଶଧରମାନଙ୍କର ଦୁରବସ୍ଥା ଦର୍ଶନ କଲେ ପ୍ରତ୍ୟେକ ହୃଦୟବାନ୍ ବ୍ୟକ୍ତିଙ୍କର ଅନ୍ତରାତ୍ମା ଗଭୀର ଶୋକାଭିଭୂତ ହେବ । କବି ଯଥାର୍ଥ ଲେଖିଅଛନ୍ତି "କର୍ପୂର ଯାଇଛି କନାଖଣ୍ଡ ଅଛି ପଡ଼ି" । ଯେଉଁଠାରେ ଯାହା ଅତ୍ୟନ୍ତ ଆବଶ୍ୟକ ହୁଏ ସେହିଠାରେ ତାହାର ପ୍ରଥମ ଆବିର୍ଭାବ ହୋଇଥାଏ ଏବଂ ହେବା ସ୍ୱାଭାବିକ, ଏହି ପ୍ରାକୃତିକ ବିଧାନ ଦୃଷ୍ଟିରେ ଉତ୍କଳବ୍ରାହ୍ମଣସମିତିର ଉତ୍ପତ୍ତି ଯଥାସ୍ଥାନରେ ହୋଇଅଛି ବୋଲିବାକୁ ହେବ ।

ଉଦ୍ଦେଶ୍ୟ—

ମୂଳନାମରୁ ସହଜରେ ଅନୁମିତ ହେବ ଯେ ଦୁରବସ୍ଥାପନ୍ନ ଉତ୍କଳ ବ୍ରାହ୍ମଣମାନଙ୍କ ଉନ୍ନତି ବିଧାନ ଏ ସମିତିର ଉଦ୍ଦେଶ୍ୟ । ଯେଉଁଆଡ଼କୁ ଚାହିଁ ଗୃହଆଡ଼େ ଅଭାବ, ଗୃହଆଡ଼େ ଦୁର୍ଗତି; କି ଶିକ୍ଷା, କି ସାହିତ୍ୟ (ଏକତା) କି ସମ୍ପଦ କି ସାମାଜିକତା ସବୁ ବିଷୟରେ ବ୍ରାହ୍ମଣମାନଙ୍କ ଦଶା ଅତ୍ୟନ୍ତ ଶୋଚନୀୟ । ସକଳପ୍ରକାର ଉନ୍ନତି ବିଧାନ ଉଦ୍ଦେଶ୍ୟ ହେଲେହେଁ ବିପୁଳ ଅତି ଦୁଃସାଧ; ସେ ସବୁରେ ଏକାବେଳକେ ହସ୍ତକ୍ଷେପ କରିବା ଆମ୍ଭମାନଙ୍କ ସୀମାବଦ୍ଧ ଶକ୍ତିପକ୍ଷେ ଅସ-

ମ୍ଭବ । ତେଣୁ ସମସ୍ତ ଉନ୍ନତିର ମୂଳୀଭୂତ ଶିକ୍ଷାବସ୍ତାରିହିଁ ବର୍ତ୍ତ-ମାନ ସମିତିର ପ୍ରଥମ ଏବଂ ପ୍ରଧାନ ଉଦ୍ଦେଶ୍ୟ । ଅମ୍ଭମାନଙ୍କ ଏହି ମତପୋଷକଭାବରେ ସମ୍ପାଦକ ଲେଖି ଅଛନ୍ତି କି "ସମିତିର ଅନ୍ୟ ଉଦ୍ଦେଶ୍ୟ ଅର୍ଥାତ୍ "ଦୁରବସ୍ଥ ବ୍ରାହ୍ମଣ ସମାଜର ଉନ୍ନତି ବିଧାନ କଳ୍ପେ ସଦୁପାୟ ସଙ୍ଗ୍ରହର ଚେଷ୍ଟା" ସମ୍ବନ୍ଧରେ କିଛୁ ହୋଇଥିବାର ଉଲ୍ଲେଖ ନାହିଁ । ବୋଧହୁଅଇ ଏବିଷୟଟି ଅତ୍ୟନ୍ତ ଗୁରୁତ୍ର ବୋଲି ତାହାକୁ ପଛକୁ ରଖି କେବଳ ଶିକ୍ଷାର ବନୋବସ୍ତ ପ୍ରଥମେ କରୁ-ଅଛନ୍ତି । ଏ ପନ୍ଥା ମନ୍ଦନୁହେ, ଏବଂ ଶିକ୍ଷାଦାନ ପ୍ରଥମ କର୍ତ୍ତବ୍ୟ, ତହିଁରେ ମଧ୍ୟ ସନ୍ଦେହ ନାହିଁ । କାରଣ ଶିକ୍ଷିତ ଲୋକଙ୍କ ସଂଖ୍ୟା ବୃଦ୍ଧି ନ ହେଲେ ସାମାଜିକ ଉନ୍ନତିର ସୁବିଧା ନାହିଁ" । ପ୍ରାଚୀନ ପୁରୀ ନଗରୀ, ଏଥିରେ ପୁଣି ବ୍ରାହ୍ମଣ ସମିତି; ସୁତରାଂ ସାଧାରଣ ମନେ କରି ପାରନ୍ତି ଯେ ଯଜନ ଯାଜନ ଅଧ୍ୟୟନ ଅଧ୍ୟାପନାଦି ବୈଦିକ ଷଟ୍ କ୍ରିୟାର ପୁନରୁଦ୍ଧାର କରି ଅତୀତ ଗୌରବ ସ୍ଥାପନ କରିବା, ଏ ସମିତିର ଉଦ୍ଦେଶ୍ୟ । କିନ୍ତୁ ଅମ୍ଭେମାନେ ଏଠାରେ ସ୍ପଷ୍ଟ ଭାବରେ ସ୍ୱୀକାର କରୁଅଛୁ ଯେ, ପ୍ରାଚୀନ ବିଧିବିଧାନ ମାନଙ୍କର ପୂର୍ଣ୍ଣ ଅନୁସରଣ କରି ପ୍ରାଚୀନ ଯୁଗର ବିଭବ ଏବଂ ସୁଖ୍ୟାତିକୁ ଅବିକଳ ଫେରାଇ ଆଣିବା ବର୍ତ୍ତମାନ ଏକ ପ୍ରକାର ଅସମ୍ଭବ । ଅମ୍ଭେମାନେ ଚାରିଆଡେ ପରିବର୍ତ୍ତନ ଦେଖୁଅଛୁ; ସମାଜ, ରାଜନୀତି, ଧର୍ମ, ପରିବାର ଇତ୍ୟାଦି ସମସ୍ତ କ୍ଷେତ୍ରରେ ଅମ୍ଭମାନଙ୍କର ଶତ ଅବରୋଧ ସତ୍ତ୍ୱେ ପରିବର୍ତ୍ତନ ନିଜେ ପ୍ରବେଶ ଲାଭ କରୁଅଛି । ଏ ସ୍ରୋତର ପ୍ରତି-କୂଳରେ ଗତି କରିବାର ଚେଷ୍ଟା ବିଡମ୍ବନା ମାତ୍ର । ତେଣୁ ନିଜର ଏକାବେଳକେ ନ ବୁଡ଼ାଇ ବ୍ରହ୍ମତ୍ୱର ମୁଖ୍ୟ ଉପାଦାନ ସତ୍ୟ ଶୌଚାଦି ପ୍ରବୃତ୍ତିମାନଙ୍କୁ ଜାଗ୍ରତ ରଖି ସମୟୋଚିତ ସଂସ୍କାର ଶିକ୍ଷା ପ୍ରଚାର ବ୍ୟବସ୍ଥା କରିବା ଉନ୍ନତିର ପ୍ରଧାନ ଉଦ୍ଦେଶ୍ୟ ବୋଲି ଅବ-ଧାରିତ ହୋଇଅଛି । କେବଳ ସଂସ୍କୃତ ଶିକ୍ଷା ପ୍ରତି ମନୋଯୋଗ ନ

ଦେଇ ଇଂରାଜୀ ଶିକ୍ଷା ଅନେକଙ୍କ ମଧ୍ୟ ଧାନ ଦୃଷ୍ଟି ହୋଇଅଛି । ପ୍ରକୃତରେ ଦେଖିବାକୁ ଗଲେ ଭାରତବାସୀ ଅନେକାଳ ଇଂରେଜ ଦର୍ପଣରେ ଆପଣାର ମୁଖ ଦେଖି ନିଜର ରୂପଲାବଣ୍ୟ ଅନୁଭବ କରୁ ଅଛନ୍ତି । ଇଂରେଜ ପଢ଼ି ନିଜ ଜାତି, ନିଜ ଦେଶ, ନିଜ ଧର୍ମ, ନିଜ ସାହିତ୍ୟ, ନିଜ ସମାଜ ବୋଲି ଅଭିମାନ କରିବାକୁ ଶିଖି ଅଛନ୍ତି । ସେ ସବୁ ପ୍ରତି ଆନ୍ତରିକ ଆଦର ଅନୁରାଗ ଏବଂ ଭକ୍ତି କରିବାକୁ ପ୍ରବୃତ୍ତ ହୋଇ ଅଛନ୍ତି । ଭାରତର ଅନ୍ୟାନ୍ୟ ପ୍ରଦେଶରେ ଏହିପରି ସୁସ୍ପଷ୍ଟ ପ୍ରମାଣ ଦେଖି ବର୍ତ୍ତମାନ ଇଂରେଜ ଶିକ୍ଷାର ପ୍ରକୃତ ପ୍ରଭାବରେ ସମିତି ବହୁଳ ପରିମାଣରେ ଆସ୍ଥା ସ୍ଥାପନ କରି ଅଛନ୍ତି । ମୂଳତଃ ମାତୃଭାଷା, ସଂସ୍କୃତ ଓ ଇଂରେଜ ଶିକ୍ଷାର ଯଥୋଚିତ ଉନ୍ନତି ବିଧାନ ବର୍ତ୍ତମାନ ସମିତି ନିଜର କର୍ତ୍ତବ୍ୟ ବୋଲି ସ୍ଥିର କରିଅଛନ୍ତି । ସଂସ୍କାର ଅନ୍ୟତର ଉଦ୍ଦେଶ୍ୟ ହେଲେହେଁ ଆମ୍ଭମାନଙ୍କର କ୍ଷୀଣଶକ୍ତି ବିବେଚନାରେ ଅଦ୍ୟାପି କୌଣସି ଗୁରୁତର ସାମାଜିକ ବିଧାନର ଆଲୋଚନାରେ ଆମ୍ଭମାନେ ପ୍ରବୃତ୍ତ ହୋଇନାହୁଁ, କିନ୍ତୁ ଶକ୍ତି ଅନୁସାରେ ସାମାନ୍ୟ ସାମାଜିକ ତ୍ରୁଟି ପରିହାର କରିବା ନିମନ୍ତେ ସର୍ବଦା ଚେଷ୍ଟିତ ଅଛୁ ଏହା ଅବଶ୍ୟ ଗୁରୁତର-ସଂସ୍କାରର ପଥ ପରିଷ୍କାର କରୁଅଛୁ ବୋଲି ଆମ୍ଭମାନଙ୍କର ଧାରଣା ।

କ୍ଷେତ୍ର—ଉତ୍କଳ ବ୍ରାହ୍ମଣ ସମିତି ପୁରୀରେ ସ୍ଥାପିତ ହୋଇଅଛି ସତ୍ୟ କିନ୍ତୁ ଏହାର କର୍ମକ୍ଷେତ୍ର ପୁରୀରେ ଆବଦ୍ଧ ନୁହେ । ସମଗ୍ର ଉତ୍କଳଖଣ୍ଡର ବ୍ରାହ୍ମଣ ସମାଜ ଏହାର କାର୍ଯ୍ୟଭୂମି ବୋଲି ସମିତିର ନାମରୁ ସହଜରେ ପ୍ରତୀୟମାନ ହେବ । ଉତ୍କଳ କହିଲେ କେବଳ ରାଜନୈତିକ ଓଡ଼ିଶାକୁ ବୁଝିବାକୁ ହେବନାହିଁ । ପ୍ରାକୃତ ଓଡ଼ିଶା ଅର୍ଥାତ୍ ସମସ୍ତ ଓଡ଼ିଆଭାଷୀ ପ୍ରଦେଶମାନ ଉତ୍କଳର ଅନ୍ତର୍ଭୂତ । "ଅତଏବ ମଧ୍ୟ ଏଠାରେ "ଉତ୍କଳ ବ୍ରାହ୍ମଣ" ବୋଇଲେ କେବଳ ଉତ୍କଳଶ୍ରେଣୀୟ ବ୍ରାହ୍ମଣମାନଙ୍କୁ ନ କହି ଉତ୍କଳବାସୀ ଓ ଉତ୍କଳଭାଷୀ ବ୍ରାହ୍ମଣମାନଙ୍କୁ ଉଦ୍ଦେଶ୍ୟ କରୁଅଛି" ।

ସମିତି ଆଜକୁ ୫ ବର୍ଷ ହେଲା ଏହି ପ୍ରଣାଳୀରେ କାର୍ଯ୍ୟ କରି ଆସୁଅଛନ୍ତି । ଏ ଜିଲା ମୋଫସଲର କେତେକ ସ୍ଥାନରେ ଶାଖା ସମିତି ମାନ ସ୍ଥାପିତ ହୋଇଅଛି । କିନ୍ତୁ ଅନ୍ୟାନ୍ୟ ଜିଲାରେ ଏପର୍ଯ୍ୟନ୍ତ ମୁଖ୍ୟଭାବରେ କୌଣସି ଆନ୍ଦୋଳନ ହୋଇ ନାହିଁ । ଅଦ୍ୟାପି ସମିତିର ସମ୍ପଦ ଅଳ୍ପ, ଶକ୍ତି ସାମାନ୍ୟ, ତେଣୁ ଦୂରସ୍ଥାନମାନଙ୍କରେ ନିଜର ଉଦ୍ଦେଶ୍ୟ ପ୍ରଚାର କରି କାର୍ଯ୍ୟ ବିସ୍ତାର କରିବା ସୁଯୋଗ ପାଇ ନାହାନ୍ତି । ଯାହା ହେଉ ତାଳଚେର, ବାମଣ୍ଡା ଓ ଖଲ୍ଲିକୋଟ ପ୍ରଭୃତି ରାଜଧାନୀମାନଙ୍କରେ ପ୍ରତିଷ୍ଠିତ ସ୍ଥାନୀୟ ବ୍ରାହ୍ମଣ ସମିତିମାନଙ୍କ ସହିତ ଏ ଉତ୍କଳ ବ୍ରାହ୍ମଣ ସମିତିର ସହାନୁଭୂତି ଅଛି । ଏମାନଙ୍କଛଡା ଅନ୍ୟାନ୍ୟ ସ୍ଥାନରେ ଯେ ସମସ୍ତ ସମାଜ ଅଲକ୍ଷିତ ଭାବରେ ବ୍ରାହ୍ମଣମାନଙ୍କର କଲ୍ୟାଣସାଧନ କରୁଅଛନ୍ତି, ଉତ୍କଳ ବ୍ରାହ୍ମଣ ସମିତି ସେମାନଙ୍କ ସହିତ ଆଧ୍ୟାତ୍ମିକ ସମ୍ବନ୍ଧପାଶରେ ଆବଦ୍ଧ । ଏହି ସକଳ ସଭା ସମିତି ସଙ୍ଗେ ଏ ସମିତିର ଏପର୍ଯ୍ୟନ୍ତ କାଗଜପତ୍ରଦ୍ୱାରା ସମ୍ବନ୍ଧ ନିର୍ଦ୍ଧାରିତ ହୋଇ ନ ଥିଲେସୁଦ୍ଧା କାର୍ଯ୍ୟତଃ ଏବଂ ଭାବତଃ ସୁଦୃଢ଼ ସମ୍ପର୍କ ରହିଅଛି । ଆଶା ଯେ, ଅଚିରେ ଏ ଆନ୍ତରିକ ସମ୍ବନ୍ଧର ବାହ୍ୟବିକାଶ ହେବ ।

ଅନ୍ୟାନ୍ୟ ସମିତି ସହିତ ଏ ସମିତିର ସମ୍ବନ୍ଧ—

ଉତ୍କଳବ୍ରାହ୍ମଣସମିତି କୌଣସି ସାମ୍ପ୍ରଦାୟିକ ସଂକୀର୍ଣ୍ଣତା ଦୋଷରେ ଦୂଷିତ ନୁହେ । ଗତବର୍ଷ କାର୍ଯ୍ୟ ବିବରଣୀରେ ଆମ୍ଭେମାନେ ଏହା ସ୍ପଷ୍ଟାକ୍ଷରରେ ପ୍ରକାଶ କରିଥିଲୁଁ । ଏ ବର୍ଷ ମଧ୍ୟ ତାହାହି ଅଧିକତର ଦୃଢ଼ତା ଏବଂ ସରଳତାର ସହିତ ପ୍ରକାଶ କରୁଅଛୁଁ । ଏଠାରେ ପୁନଶ୍ଚ ସେ ସମସ୍ତ କଥା ଉଦ୍ଧୃତ କରିବା ଅନାବଶ୍ୟକ । କିନ୍ତୁ ବ୍ରାହ୍ମଣ, କରଣ, କାୟସ୍ଥସମିତି ପ୍ରଭୃତି ଦଳାଦଳି ଦେଶରେ ସଂକୀର୍ଣ୍ଣତାବୃଦ୍ଧି କରୁଅଛି ବୋଲି ଯେଉଁମାନେ ମତ ବ୍ୟକ୍ତ କରନ୍ତି ସେମାନଙ୍କ ଉଦାରତା ଏବଂ ସାର୍ବଜନୀନତାପ୍ରତିଷ୍ଠାନ୍ତ ତାଙ୍କ ଉକ୍ତି ଓ ବିଶ୍ୱାସ

ଭଷି ଅମ୍ଭେମାନେ ଏଠାରେ ଏତକ ମାତ୍ର କହିପାରୁ ଯେ, ଏହି ସମସ୍ତ କ୍ଷୁଦ୍ର ( ସଂକୀର୍ଣ୍ଣ ନୁହେ ) ଦଳ ବା ସମିତି କଦାପି ସଂକୀର୍ଣ୍ଣତା ବା ଅନୈକ୍ୟ ଉତ୍ପାଦନ କରୁ ନାହିଁ କମ୍ବା କରିବାକୁ କୌଣସି କାରଣ ନାହିଁ । ବରଂ ଏହା ସବୁ ସେହି ବିରାଟ ଜାତୀୟକୁଦସ୍ତର ପରିପୋଷକ ସୂକ୍ଷ୍ମ ନାଳୀସ୍ୱରୂପ । “ ସର୍ବଦେବ ନମସ୍କାର କେଶବଂ ପ୍ରତି ଗଚ୍ଛତି ” ଏହା ଅମ୍ଭମାନଙ୍କର ବିଶ୍ୱାସ ଏବଂ ମୂଳମନ୍ତ୍ର । ବ୍ରାହ୍ମଣ ହେଉ ବା କାୟସ୍ଥ ହେଉ ହିନ୍ଦୁ ହେଉ ବା ମୁସଲମାନ ହେଉ ଯେ କୌଣସି ସମିତି ପଲ୍ଲୀଗ୍ରାମର ସାମାନ୍ୟ “ ବିଦ୍ୟାବିବର୍ଦ୍ଧିନୀ ” ସଭାଠାରୁ ଆରମ୍ଭ କରି ଉନ୍ନତ “ ଉତ୍କଳସମ୍ମିଳନୀ ” ପର୍ଯ୍ୟନ୍ତ ସମସ୍ତପ୍ରକାର ଦଳଗତ ଉଦ୍ୟମ ପ୍ରକୃତ ଆନ୍ତରିକତା ସତ୍ୟନିଷ୍ଠା ଏବଂ ଉଦାର ନୀତିରେ ପରିଚାଳିତ ହେଲେ ବିଶାଳ ଭାରତଜାତିର ତଥା ସମଗ୍ର ମାନବମଣ୍ଡଳର ଯେ କଲ୍ୟାଣକର ହେବ ଏଥିରେ କୌଣସି ସନ୍ଦେହ ନାହିଁ । ବିଶେଷତଃ ଏହି କ୍ଷୁଦ୍ର ସମିତିମାନଙ୍କର ପରସ୍ପର ସହିତ ସୌହାର୍ଦ୍ଦ୍ୟ ଥିବାସ୍ଥଳେ ଉପର୍ଯ୍ୟୁକ୍ତ ଆଶଙ୍କା ସଂପୂର୍ଣ୍ଣ ଅମୂଳକ । ଏ ପ୍ରସଙ୍ଗରେ ଅମ୍ଭେମାନେ ଅତ୍ୟନ୍ତ ଆହ୍ଲାଦ ସହକାରେ ପ୍ରକାଶ କରି ପାରୁ ଯେ; ଅଗ୍ରଜତୁଲ୍ୟ କରଣ ସମିତି ଏ ସମିତିପ୍ରତି ସୌହାର୍ଦ୍ଦ୍ୟ ଏବଂ ସୋଦରତା ଦେଖାଇ ପ୍ରଥମ ବାର୍ଷିକବିବରଣୀରେ ଲେଖିଥିଲେ କି “ ଅଗ୍ରତୁଲ୍ୟ ଅଗ୍ରଜା ଉତ୍କଳବ୍ରାହ୍ମଣସମିତି ଏହି ସମ୍ମିଳନୀକୁ ଯଥାଶକ୍ତି ଆଶାର ବାଣୀ ଶୁଣାଇ ଥିବାରୁ ଆଜ ନବବର୍ଷର ପ୍ରାରମ୍ଭରେ ସମ୍ମିଳନୀର କ୍ଷୁଦ୍ର ଅନ୍ତଃକରଣରୁ ସେମାନଙ୍କପ୍ରତି ସଂପୂର୍ଣ୍ଣ ସହାନୁଭୂତି ଓ କୃତଜ୍ଞତା ସ୍ରୋତ ପ୍ରବାହିତ ହେଉଅଛି ” । ଏକା କରଣସମିତିଠାରୁ କାହିଁକି ଅନ୍ୟାନ୍ୟ ସଭା ସମିତିର ସଭ୍ୟମାନଙ୍କଠାରୁ ଏବଂ ସ୍ୱଜାତି ବ୍ରାହ୍ମଣେତରବିଶିଷ୍ଟ ବ୍ୟକ୍ତିମାନଙ୍କଠାରୁ ଏହିପରି ଆଶ୍ୱାସ, ଆଦର ଏବଂ ଅଭ୍ୟର୍ଥନା ପାଇଅଛୁ । ତାହାର ବିନିମୟରେ ଏ ସମିତି ସେମାନଙ୍କୁ ଏ ବିବରଣୀର ବାକ୍ୟଛଟାଦ୍ୱାରା ଯେ କେବଳ ସ୍ନେହ

ସଭାର ସହାନୁଭୂତି ପ୍ରଦର୍ଶନ କରି କର୍ତ୍ତବ୍ୟ ଶେଷ କରୁଅଛନ୍ତି ତାହା ନୁହେଁ । ଅଜି ନିତାନ୍ତ ଦୁରବସ୍ଥା ହେଲେସୁଦ୍ଧା ପ୍ରତ୍ୟେକ ବ୍ରାହ୍ମଣ ଯେପରି ନିଜର ନିତ୍ୟନୈମିତ୍ତିକ ଗାର୍ହସ୍ଥ୍ୟ ଉପାସନାଦିରେ " ରାଜ୍ଞଃ ପ୍ରଜାନାଂ ଶାନ୍ତିର୍ଭବତୁ " ବୋଲି ବିଶ୍ୱକଲ୍ୟାଣକାମନା କରୁଅଛନ୍ତି ଦଳଗତ ସାଧାରଣଜୀବନରେ ଏ ବ୍ରାହ୍ମଣସମିତି ସେହି-ପରି ହୃଦୟର ଗଭୀରତମ ପ୍ରଦେଶରୁ ପ୍ରତ୍ୟେକ ସଦାଶୟ ବ୍ୟକ୍ତି ଏବଂ ସମାଜ ଉପରେ ନିରନ୍ତରରେ ନିରନ୍ତର ଆଶୀର୍ବାଦ ଢାଳୁ ଅଛନ୍ତି ।

ନେତୃ ଅନୁଯାୟୀଦଳ—

ସୁଖର ସହିତ ପ୍ରକାଶ କରୁଅଛୁଁ ଯେ, ସାମାନ୍ୟ କେତେକଜଣ ମଧ୍ୟବିତ୍ତ ବ୍ରାହ୍ମଣମାନଙ୍କଦ୍ୱାରା ଏ ସମିତି ଗଠିତ ଏବଂ ପରିଚାଳିତ ହୋଇ ଆସୁଅଛିଲେହେଁ କାଳକ୍ରମେ ଏହାର ଅନୁପୂରକ ଏବଂ ପୃଷ୍ଠ-ପୋଷକଙ୍କ ସଂଖ୍ୟା ବଢୁଅଛି । ପ୍ରତ୍ୟେକ ଉତ୍କଳୀୟ ବ୍ରାହ୍ମଣ ଧର୍ମତଃ ନ୍ୟାୟତଃ ଏ ସମିତିର ନେତୃଦଳ ଭୁକ୍ତ ବୋଲି ଆମ୍ଭେମାନେ ବିବେ-ଚନା କରୁଁ । କିନ୍ତୁ ଦୁଃଖର ବିଷୟ ଏହି ଯେ, ଏପର୍ଯ୍ୟନ୍ତ କୌଣସି ମାନ୍ୟଗଣ୍ୟ ପଦସ୍ଥ ବ୍ରାହ୍ମଣ ସମିତିର ନେତୃତ୍ୱ ଗ୍ରହଣ କରି ନାହାନ୍ତି । କାର୍ଯ୍ୟନିର୍ବାହକ ସମିତିର ସଭ୍ୟ ତାଲିକାରୁ ଦେଖାଯିବ ଯେ ଏହାର ପ୍ରଧାନ ଚାଳକମାନେ ପ୍ରାୟ ସମସ୍ତେ ମଧ୍ୟବିତ୍ତ ବ୍ୟକ୍ତି । ଏମାନଙ୍କର ନିରବଚ୍ଛିନ୍ନ ଯତ୍ନ ଏବଂ ଅଧ୍ୟବସାୟଦ୍ୱାରା ସମିତି କ୍ରମଉନ୍ନତି ଲାଭ କରୁ ଅଛନ୍ତି । ଈଶ୍ୱର କରନ୍ତୁ ଏହି ନିଷ୍ଠା ଓ ସଂକଳ୍ପ ସ୍ଥାୟୀ ହେଉ । କାର୍ଯ୍ୟନିର୍ବାହକ ସମିତିର ସଭ୍ୟମାନଙ୍କ ମଧ୍ୟରୁ ଆମ୍ଭମାନଙ୍କ ସ୍ଥାୟୀ ସଭାପତି ପଣ୍ଡିତ ଶ୍ରୀ ସଦାଶିବ କାବ୍ୟକଣ୍ଠ, ପରମସ୍ନେହାସ୍ପଦ ସହକାରୀ ସଭାପତି ଶ୍ରୀଯୁକ୍ତ ମିତ୍ରୁ ମିଶ୍ର ଏବଂ ଭକ୍ତିଭାଜନ ପଣ୍ଡିତ ଶ୍ରୀ ଯୋଗେନ୍ଦ୍ର ମିଶ୍ର କାବ୍ୟବିଶାରଦ; ଶ୍ରଦ୍ଧେୟ ବାବୁ ଚନ୍ଦ୍ରମଣି କର ଓ ଲୋକନାଥ ରଥ ମହାଶୟମାନଙ୍କଠାରେ ସମିତି ଅତ୍ୟନ୍ତ ଋଣୀ । ଏମାନଙ୍କ ନିଃ-ସ୍ୱାର୍ଥ ପରିଶ୍ରମ ଏବଂ ଅଦମ୍ୟ ଉତ୍ସାହ ବାସ୍ତବିକ ପ୍ରଶଂସ୍ୟ ଓ ଧନ୍ୟ-ବାଦାର୍ହ ।

ସମିତିର ସାଧୁ ଉଦ୍ଦେଶ୍ୟ ହୃଦୟଙ୍ଗମ କରି ଯେଉଁ ବ୍ରାହ୍ମଣେତର ସଦାଶୟ ବ୍ୟକ୍ତିମାନେ ଏଥିପ୍ରତି ସହାୟ ସହାନୁଭୂତି ପ୍ରକାଶ କରିଅଛନ୍ତି ସେମାନେ ପୃଷ୍ଠପୋଷକ ବା ଅନୁଯାୟୀ ଦଳଭୁକ୍ତ । ସକଳଶ୍ରେଣୀର ବ୍ୟକ୍ତିମାନେ ଏହି ଦଳର ଅନ୍ତର୍ଭୁକ୍ତ । ଗଭୀର କୃତଜ୍ଞତାର ସହିତ ସ୍ୱୀକାର କରୁଅଛୁଁ ଯେ ଯେଉଁ ସଦାଶୟମାନଙ୍କଠାରୁ ଗୁଡ଼ିଲ ମୂଠାକଠାରୁ ଟଙ୍କାମୂଠାକ ପର୍ଯ୍ୟନ୍ତ, ଆଶ୍ୱାସଠାରୁ ଉତ୍ତେଜନା ପର୍ଯ୍ୟନ୍ତ ନାନାପ୍ରକାରେ ଆମ୍ଭେମାନେ ସାହାଯ୍ୟ ପାଇଅଛୁଁ ସେହି ଅନୁଯାୟୀଦଳରେ ମଞ୍ଜୁଷାର ଯୁବରାଜ ଶ୍ରୀମାନ୍ ଶ୍ରୀନିବାସପଟ୍ଟଦେବବର୍ମ୍ମା, ବକ୍ସି ଶ୍ରୀ ଲୋକନାଥ ବିଦ୍ୟାଧର ମହାପାତ୍ର ଭ୍ରମରବର ରାୟ; ଶ୍ରୀଯୁକ୍ତ ବାବୁ ମଧୁସୂଦନ ରାଓ; ବ୍ରଜସୁନ୍ଦର ଦାସ ବି ଏ, ବାସୁଧର ରାୟ, ଦିବାକର ଦାସ, ରଘୁନାଥ ରାଓ, ରାଧାକୃଷ୍ଣ ବସୁ ଏମ୍ ଏ, ମୁନ୍‌ସି ଲାଲମହମ୍ମଦ ମହାଶୟଙ୍କ ନାମ ବିଶେଷ ଉଲ୍ଲେଖ ଯୋଗ୍ୟ । ଏମାନଙ୍କ ସହାନୁଭୂତି ଓ ଉଦାରଗୁଣରେ ସମିତି ବହୁ ଉପକୃତ ହୋଇ ଅଜି ନବବର୍ଷରେ କୃତଜ୍ଞତାପୂର୍ଣ୍ଣ ଅନ୍ତରକ ଧନ୍ୟବାଦ ଅର୍ପଣ କରୁଅଛନ୍ତି ।

ସାଧାରଣ ମତ—ଏ ସମିତି ଗତ ୫ ବର୍ଷ ମଧ୍ୟରେ ଆଶାନୁରୂପ ଶକ୍ତି ସଞ୍ଚୟ କରି ପାରି ନ ଥିଲେହେଁ ଏକାବେଳକେ ସାଧାରଣ ଦୃଷ୍ଟିର ବହିର୍ଭୁତ ହୋଇ ଅଜ୍ଞାତଭାବରେ ପଡ଼ିରହି ନାହିଁ । ଅତ୍ୟନ୍ତ ଆନନ୍ଦ ଏବଂ କୃତଜ୍ଞତାର ସହିତ ପ୍ରକାଶ କରୁଅଛୁଁ ଯେ, ସ୍ୱଦେଶୀ ବିଦେଶୀ କେତେକ ସମ୍ପାଦକ ସମିତିର ସାଧୁଦେଶ୍ୟ ହୃଦୟଙ୍ଗମ କରି ତତ୍ପ୍ରତି ଯଥା ସମୟେ ସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରିବାଲାଗି ପ୍ରୟାସୀ ହୋଇ ଥାନ୍ତି । ଏଠାରେ ସେମାନଙ୍କ ମଧ୍ୟରୁ କେତେକ ପତ୍ରିକାର ମତ ଆଂଶିକ ଉଦ୍ଧୃତ କଲୁଁ । କଲିକତାର Iudian Miror (ସୁପ୍ରସିଦ୍ଧ ଇଣ୍ଡିୟାନ ମିରର) ୧୯୦୦ ଡିସେମ୍ବର ତା ୪ ରଖରେ ଲେଖିଅଛନ୍ତି—

The Brahmins of Puri ought to be congratulated on their having organised a Sabha under the Presidency of Pandit Sadasiv Kavyakantha the learned Head Pandit of the Puri Zillah School. The object of the Sabha is to encourage Sanskrit learning among the Brahmin boys of the locality by granting pecuniary help to them. The Sabha we are glad to learn has hitherto been doing what it can with its unaided efforts by raising subscriptions and donations from among its members, but now that both His Excellency the Vice Roy and His Honour the Leiutenant Governor propose paying visits to this ancient home of Sanskrit learning, we trust the Sabha among other institutions would receive due recognition and encouragement from Government.

ଅର୍ଥାତ୍ ପୁରୀର ବ୍ରାହ୍ମଣମାନେ ସେଠା ଜିଲ୍ଲାସ୍କୁଲର ସୁଯୋଗ୍ୟ ହେଡପଣ୍ଡିତ ଶ୍ରୀଯୁତ ଶ୍ରୀ ସଦାଶିବ ମିଶ୍ରଙ୍କ ସଭାପତିତ୍ୱରେ ଏକ ସଭା ଗଠନ କରିଅଛନ୍ତି । ଏହା ଅବଶ୍ୟ ପ୍ରଶଂସାର କଥା । ସେ ସ୍ଥାନର ବ୍ରାହ୍ମଣ ବାଳକମାନଙ୍କ ମଧ୍ୟରେ ସଂସ୍କୃତ ଶିକ୍ଷା ପ୍ରଚାର କରିବା ଏ ସଭାର ଉଦ୍ଦେଶ୍ୟ । ସେଥିଲାଗି ବ୍ରାହ୍ମଣ ପିଲାମାନଙ୍କୁ ଆର୍ଥିକ ସାହାଯ୍ୟ ଦିଆଯାଏ । ଆମ୍ଭେମାନେ ସୁଖୀ ହେଲୁ ଯେ ସଭା ଅନ୍ୟ କାହାର ସାହାଯ୍ୟ ନ ନେଇ କେବଳ ନିଜ ସଭ୍ୟମାନଙ୍କ ଏକ କାଳୀନ ଏବଂ ମାସିକ ଚାନ୍ଦାଦ୍ୱାରା ଏପର୍ଯ୍ୟନ୍ତ ଯଥାଶକ୍ତି କାର୍ଯ୍ୟ କରି ଆସୁଅଛନ୍ତି । ଯାହାହେଉ ବର୍ତ୍ତମାନ ଆମ୍ଭମାନଙ୍କ ମାନନୀୟ ବଡଲାଟ ଏବଂ ଛୋଟ ଲାଟ ଉଭୟେ ସଂସ୍କୃତ ଶିକ୍ଷାର ପ୍ରାଚୀନ ଅଧିଷ୍ଠାନ ପୁରୀନଗରୀ ଦର୍ଶନର ପ୍ରସ୍ତାବ କରିଅଛନ୍ତି । ଆମ୍ଭମାନଙ୍କ ବିଶ୍ୱାସ ସଭାର ଉଦ୍ଦେଶ୍ୟ ଉପଲବ୍ଧି କରି ଗଭର୍ଣ୍ଣମେଣ୍ଟ ଉପଯୁକ୍ତ ଉତ୍ସାହ ପ୍ରଦାନ କରିବେ ।

ଉତ୍କଳର ସୁପରିଚିତ ହିତ୍ୟୁଜେୟଣ୍ଟ ପତ୍ରିକା ଦୀପିକା ସମିତିର ଗତ ବର୍ଷର ମୁଦ୍ରିତ କାର୍ଯ୍ୟ ବିବରଣୀ ପାଠକରି ଜୁଲାଇ ତା୧୬-୧୯୦୪ ରେ ଲେଖିଅଛନ୍ତି ** "ଏହି ବିବରଣୀ ପାଠକରି ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ ହୋଇଅଛୁଁ ଏବଂ ସମିତି ଅଳ୍ପକାଳରେ ଯାହା କରିବାକୁ ସକ୍ଷମ ହୋଇଅଛନ୍ତି ତହିଁପାଇଁ ଧନ୍ୟବାଦ ଦେଉଅଛୁଁ । ସମିତି କାର୍ଯ୍ୟଦ୍ୱାରା ଦେଖାଇ ଅଛନ୍ତି ଯେ, ସେ ସଧାରଣ ସାହାଯ୍ୟ ଓ ସହାନୁଭୂତି ପାଇବାର ଯୋଗ୍ୟ ଅଟନ୍ତି ଏବଂ ଏକାନ୍ତ ଆଶାକରୁ କି ଜନସାଧାରଣ ଅଧିକରେ ସାହାଯ୍ୟ କରିବାକୁ ଅଗ୍ରସର ହେବେ ଏବଂ ଉତ୍କଳର ଅନ୍ୟାନ୍ୟ ସମିତିମାନ ଏହି ଆଦର୍ଶରେ କାର୍ଯ୍ୟକରି ସ୍ୱୀୟ ଅଭୀଷ୍ଟ ସିଦ୍ଧି କରିବେ" । ଗଞ୍ଜାମର ସୁନାମ ଧନ୍ୟ ପ୍ରଜାବନ୍ଧୁ ପତ୍ରିକା ଲେଖିଅଛନ୍ତି ** ଭାରତର ପ୍ରଧାନତମ ତୀର୍ଥ ଏବଂ ଉତ୍କଳର ନାନାସ୍ଥାନବାସୀ ବ୍ରାହ୍ମଣମାନଙ୍କର ଆବାସସ୍ଥାନ ଶ୍ରୀକ୍ଷେତ୍ରରେ ବ୍ରାହ୍ମଣ-ସନ୍ତାନମାନଙ୍କ ମଙ୍ଗଳ ଉଦ୍ଦେଶ୍ୟରେ ସ୍ଥାପିତ ସମିତି ସକାଶେ କିଛି ଦାନକରିବା ଧନର ସଦ୍‌ବ୍ୟବହାର ମାତ୍ର" । ୪ ଠ ବାର୍ଷିକ ବିବରଣୀ ପୁସ୍ତିକା ପାଠକରି ଉକ୍ତ ପତ୍ରିକା ଏପ୍ରିଲ ତା ୬ । ୦୪ ରେ ଲେଖି ଅଛନ୍ତି— ପାଠକମାନେ ଶ୍ରବଣ କରି ଆଶ୍ଚର୍ଯ୍ୟାନ୍ୱିତ ହେବେ ଯେ, ସମିତିର ପରିଚାଳକମାନେ ଗରିବ ବାଳକମାନଙ୍କ ଉପକାର ନିମନ୍ତେ ମୁଷ୍ଟିଭିକ୍ଷା ପର୍ଯ୍ୟନ୍ତ କରିଅଛନ୍ତି । ଏପରି ସମିତିକୁ ଅର୍ଥପ୍ରଦାନ କଲେ ତହିଁର ଅପବ୍ୟବହାର ନ ହୋଇ ସତ୍‌କାର୍ଯ୍ୟରେ ଲାଗିବ କହିବା ବିଷୟ ବାହୁଲ୍ୟମାତ୍ର ।

ସମିତିର ମୁଖ୍ୟ ଉଦ୍ଦେଶ୍ୟ ସାଧିତ ହେବା ଅଭିପ୍ରାୟରେ ସ୍ଥାନୀୟ କେତେକ ସଭ୍ୟ ସମୟ ରେ ନିକଟବର୍ତ୍ତୀ ଶାସନମାନଙ୍କୁ ଯାଇ କୁତ୍ସିତ କୁରୀତିର ନିବାରଣ ବିଷୟରେ ଉପଦେଶ ମାନ ପ୍ରଦାନ କରିଥାନ୍ତି । ଏବଂ ସେମାନଙ୍କ ଚେଷ୍ଟାରେ ଜିଲ୍ଲାର ନାନା ସ୍ଥାନର ଶାସନ ମାନଙ୍କରେ ଶାଖା ସମିତିମାନ ସ୍ଥାପିତ ହୋଇଅଛି । ସମିତି ପ୍ରତି ଦେଶର

ଧର୍ମୀ ବ୍ୟକ୍ତିମାନଙ୍କର ସୁଦୃଷ୍ଟି ପତିତ ହେଉ । ସଭାର ପରିଚାଳକମାନେ ନିତ୍ୟନବୋତ୍ସାହରେ କାର୍ଯ୍ୟ କରିବାକୁ ସକ୍ଷମ ହେଉନ୍ତୁ ଏବଂ ଉତ୍କଳର ନାନା ସ୍ଥାନରେ ଏହାର ଶାଖାସମିତିମାନ ସ୍ଥାପିତ ହେଉ, ଆମ୍ଭେମାନେ ଈଶ୍ୱରଙ୍କ ନିକଟରେ ଏହି ପ୍ରାର୍ଥନା କରୁଅଛୁ" ।

ପତ୍ରିକାର ସମ୍ପାଦକ ମହୋଦୟଗଣ ସମିତିର କାର୍ଯ୍ୟକଳାପ ସହୃଦୟତାର ସହିତ ଗ୍ରହଣ କରି ତହିଁପ୍ରତି ସାଧାରଣ ସହାନୁଭୂତି ପ୍ରାର୍ଥନା କରିଥିବାରୁ ସମିତି ସେମାନଙ୍କଠାରେ ଚିରକୃତଜ୍ଞ, ତହିଁ ଆଜି ସେ ପ୍ରତ୍ୟେକଙ୍କୁ ପ୍ରୀତିପୂର୍ଣ୍ଣ ସାଦର ଧନ୍ୟବାଦ ପ୍ରଦାନ କରୁଅଛନ୍ତି ।

କାର୍ଯ୍ୟାବଳୀ—ମଙ୍ଗଳମୟ ବିଧାତାଙ୍କ କଲ୍ୟାଣରୁ ଉତ୍କଳ ବ୍ରାହ୍ମଣ ସମିତି " ଶୈଶବ ସୀମା ୫ମ ବର୍ଷ ଅତିକ୍ରମ କରି ଆଜି ଶୁଭମୁହୂର୍ତ୍ତରେ ୬ ଷ୍ଠ ବର୍ଷରେ ପଦାର୍ପଣ କରିଅଛି । ଯେଉଁମାନଙ୍କର ସ୍ନେହ ସହାନୁଭୂତି ଏବଂ ଅନୁକୂଲ୍ୟରେ ସମିତି ଏପର୍ଯ୍ୟନ୍ତ ଅଗ୍ରସର ହୋଇଅଛି ସେହି ସ୍ୱଦେଶବତ୍ସଳ ଭାଇ ବନ୍ଧୁ ଆତ୍ମୀୟ ସୋଦର ସ୍ୱଜନମାନଙ୍କୁ ସାଦର ସମ୍ଭାଷଣ କରି ୫ ମ ବର୍ଷର କାର୍ଯ୍ୟ ବିବରଣ ସେମାନଙ୍କ ନିକଟରେ ଅଗତ କରୁଅଛୁ । ସମିତିର ପ୍ରାରମ୍ଭରୁ ୪ ର୍ଥ ବର୍ଷ ଶେଷପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟାବଳୀ ଗତବର୍ଷ ପୁସ୍ତିକାକାରରେ ପ୍ରକାଶିତ ହୋଇଅଛି । ସମିତିର ନିୟମାବଳୀ, କାର୍ଯ୍ୟନିର୍ବାହିକା ସମିତିର ସଭ୍ୟଗଣଙ୍କ ନାମ, ଉଦ୍ଦେଶ୍ୟସାଧନର ଉପାୟ ପ୍ରଭୃତି ସକଳବିଷୟ ତହିଁରେ ବିଶଦରୂପେ ବର୍ଣ୍ଣିତ ହୋଇଥିବାରୁ ଏଠାରେ ସେସବୁର ପୁନରୁଲ୍ଲେଖ ନିଷ୍ପ୍ରୟୋଜନ । ବର୍ଣ୍ଣିତବର୍ଷରେ ସମିତିର ମୋଟ ଅଧିବେଶନ ସଂଖ୍ୟା ୩୦ ମଧ୍ୟରୁ ସାଧାରଣ ଅଧିବେଶନ ସଂଖ୍ୟା ୨୫ ଏବଂ ବିଶେଷ ଅଧିବେଶନ ସଂଖ୍ୟା ୫ ସାଧାରଣ ଅଧିବେଶନ ମାନଙ୍କରେ ଆର୍ଥିକ ଚିନ୍ତା ଏବଂ ମୁଷ୍ଟିଭିକ୍ଷାର ବହୁଳ ବିସ୍ତାର ଏବଂ ସଂଗ୍ରହର ଉପାୟ ନିର୍ଦ୍ଧାରଣ ଓ କେତେକ ସାମାଜିକ ସଂସ୍କାରର ଆଲୋଚନା ହୋଇଥାଏ । ଏହା ଛଡ଼ା ମୋଫସଲର ପ୍ରାଥମିକ ବିଦ୍ୟାଳୟଠାରୁ ଆରମ୍ଭ କରି କଲେଜର

ଉଚ୍ଚ ଶ୍ରେଣୀ ପର୍ଯ୍ୟନ୍ତ ସାଧାରଣ ବ୍ରାହ୍ମଣଶିକ୍ଷକମାନେ ଉପର ଅଗ୍ରର ବ୍ୟବହାରରେ ଶିକ୍ଷୋନ୍ନତି କରୁଅଛନ୍ତି ତାହାଁର ତଥ୍ୟାନୁସନ୍ଧାନ ଏବଂ କଲ୍ୟାଣ କଳ୍ପେ ସାମୟିକ ଉପଦେଶ ପ୍ରଦାନ କରାଯାଇଥାଏ ।

ବିଶେଷ ଅଧିବେଶନମାନଙ୍କ ମଧ୍ୟରୁ ୨ ଗୋଟି ଅଧିବେଶନରେ ସ୍ଥାନୀୟ ଅନ୍ୟାନ୍ୟ ଛାତ୍ରମାନଙ୍କ ସହିତ ଏହି ଛାତ୍ରାବାସର ଛାତ୍ରମାନଙ୍କୁ ଧର୍ମୋପଦେଶ ଦିଆ ଯାଇଥିଲା। ଅବଶିଷ୍ଟ ୩ ଗୋଟି ଅଧିବେଶନ ମଧ୍ୟରୁ ୨ ଗୋଟି ଯଥାକ୍ରମେ ଅଷ୍ଟଦୁର୍ଗର ରାଜା ଶ୍ରୀ ବିଶ୍ୱନାଥ ଦେବ ବର୍ମ୍ମା ଏବଂ ଭଣ୍ଡାରପୁରର ଜମିଦାର ଚଉଧୁରୀ ଶ୍ରୀ ଦନକୃଷ୍ଣ ଦାଶ ମହୋଦୟମାନଙ୍କ ଅଭ୍ୟର୍ଥନା ନିମିତ୍ତ ଅନୁଷ୍ଠିତ ହୋଇଥିଲା । ଅନ୍ୟଟିରେ ଉତ୍କଳ ବ୍ରାହ୍ମଣମାନଙ୍କର ସାମାଜିକ ସଂସ୍କାର ଓ କଲ୍ୟାଣ କାମନାରେ ସମସ୍ତ ଅଂଶରୁ ବ୍ରାହ୍ମଣ ପ୍ରତିନିଧିମାନଙ୍କୁ ଆହ୍ୱାନ କରି ଏହି ପୁରୀ ନଗରୀରେ ଏକ ବ୍ରାହ୍ମଣ ସମ୍ମିଳନୀ କରିବାର ଆଲୋଚନା ହୋଇଥିଲା । ଉକ୍ତ ଅଧିବେଶନର ନିର୍ଦ୍ଧାରଣ ମତେ ଉଲ୍ଲିଖିତ ବିଷୟରେ କର୍ତ୍ତବ୍ୟାକର୍ତ୍ତବ୍ୟ ସ୍ଥିର କରିବାର ଭାର ଏକ ସ୍ୱତନ୍ତ୍ର କମିଟି ହସ୍ତରେ ନ୍ୟସ୍ତ ହୋଇଅଛି ।

ଧର୍ମାଲୋଚନା—ଗତବର୍ଷ ବିବରଣୀ ଉପରେ ଦୀପିକା ଲେଖିଥିଲେ ଯେ " ଆମ୍ଭେମାନେ ମନେକରୁଁ କି ବ୍ରାହ୍ମଣ ପିଲାମାନଙ୍କୁ ସାହାଯ୍ୟ ଦେଇ ବିଦ୍ୟାଳୟରେ ପଢ଼ାଇବା ସଙ୍ଗେ ଧର୍ମଶିକ୍ଷାର ବ୍ୟବସ୍ଥା ସମିତି କରିଦେଲେ ଭଲ ହେବ । ଅନ୍ତତଃ ଛାତ୍ରାବାସରେ ଯେଉଁମାନେ ଅଛନ୍ତି ସେମାନେ ଯେମନ୍ତ ନିୟମିତ ରୂପେ ସନ୍ଧ୍ୟା ପୂଜାଦି କରିବେ ଏବଂ ଧର୍ମ୍ମ ସମ୍ବନ୍ଧୀୟ ଉପଦେଶ ପାଇବେ ତାହାର ନିୟମ ହେବ ଉଚିତ " । ଦୀପିକାଙ୍କର ଏ ଉପଦେଶ ଆମ୍ଭେମାନେ ଶ୍ରଦ୍ଧାର ସହିତ ଗ୍ରହଣ କରୁଅଛୁଁ । ଛାତ୍ରମାନଙ୍କର ଧର୍ମାଚରଣ ପ୍ରତି ସମିତି ପ୍ରଥ ମୂଳରୁ ଦୃଷ୍ଟି ରଖିଅଛନ୍ତି । ଛାତ୍ରାବାସରେ ଥିବା ବାଳକମାନଙ୍କର ସଦାଚାର ଏବଂ ଯଥାସମ୍ଭବ ନିତ୍ୟ ନୈମିତ୍ତିକ କ୍ରିୟା କଳାପ ଲାଗି

ଉପରେ ବିଧାନ କରାଯାଇଅଛି ତାହା ଏହି ପୁସ୍ତିକାର ପରିଶିଷ୍ଟରେ ପ୍ରକାଶିତ ଛାତ୍ରାବାସର ନିୟମାବଳୀରୁ ପ୍ରକାଶିତ ହେବ ।

ବର୍ତ୍ତିତ ବର୍ଷରେ ଅମ୍ଭମାନଙ୍କର ଶ୍ରଦ୍ଧାସ୍ପଦ ବାବୁ ରାଧାକୃଷ୍ଣ ବସୁ ଏମ୍ ଏ ମହାଶୟ "ବ୍ରହ୍ମଚର୍ଯ୍ୟ ସାଧନା" ଏବଂ ଶ୍ରୀଯୁକ୍ତ ବାବୁ ଗୋପବନ୍ଧୁ ଦାଶ ବି, ଏ "ଧର୍ମନୀତି ଶିକ୍ଷା" ଏବଂ ଶ୍ରୀଯୁକ୍ତ ପଣ୍ଡିତ ସଦାଶିବ ବିଦ୍ୟାଭୂଷଣ "ସନାତନ—ଧର୍ମ" ବିଷୟରେ ସୁନ୍ଦର୨ ବକ୍ତୃତା ମାନ ପ୍ରଦାନ କରି ଛାତ୍ରମାନଙ୍କ ଧର୍ମଜୀବନ ଗଠନ ବିଷୟରେ ଅମ୍ଭମାନଙ୍କୁ ସବିଶେଷ ସହାୟ ହୋଇଅଛନ୍ତି । ଏଥିଲାଗି ସମିତି ତାହାଙ୍କୁ ଅଶେଷ ଧନ୍ୟବାଦ ପ୍ରଦାନ କରୁଅଛି ।

ଏବର୍ଷ କାର୍ଯ୍ୟ ମଧ୍ୟରେ ଛାତ୍ରାବାସର ବିବରଣ ସର୍ବ ପ୍ରଥମେ ଉଲ୍ଲେଖ ଯୋଗ୍ୟଅଟେ । ଗତବର୍ଷ ଶେଷରେ ଅମ୍ଭେମାନେ କେବଳ ଗୋଟିଏ ଛାତ୍ରାବାସ ଗୃହ ପ୍ରସ୍ତୁତ ହେବାର ଲେଖିଥିଲୁ । ଆଜି ୧୫ ଜଣ ବ୍ରାହ୍ମଣଛାତ୍ରଙ୍କ ଦ୍ୱାରା ତାହା ଅଧ୍ୟୁଷିତ ହୋଇଥିବାର ଦେଖି ଅନ୍ତରାତ୍ମା ପୁଲକିତ ହେଉଅଛି । ଛାତ୍ରାବାସରେ ଥିବା ଛାତ୍ରମାନଙ୍କ ମଧ୍ୟରୁ ୧ ଜଣ ଗତ ପ୍ରବେଶିକା ପରୀକ୍ଷା ଏବଂ ଆଉ ଜଣେ ସଂସ୍କୃତ ସାହିତ୍ୟ ଉପାଧି ପରୀକ୍ଷା ଦେଇ ଅଛନ୍ତି । ଅନ୍ୟାନ୍ୟଙ୍କ ମଧ୍ୟରୁ ୬ ଜଣ ସରକାରୀ ବୃତ୍ତି ଭୋଗୀ ଛାତ୍ର ଅଛନ୍ତି । ଏଠା ଗବର୍ଣ୍ଣମେଣ୍ଟ ଇଂରାଜୀ ବିଦ୍ୟାଳୟର ସୁଦକ୍ଷ ଓ କର୍ତ୍ତବ୍ୟ ପରାୟଣ ଏବଂ ବ୍ରାହ୍ମଣ ସମିତିର ଅନ୍ୟତମ ଉତ୍ସାହୀ ସଭ୍ୟ ଶ୍ରୀଯୁକ୍ତ ବାବୁ ଚିନ୍ତାମଣି କର ମହାଶୟ ଛାତ୍ରାବାସର ଅବୈତନିକ ତତ୍ତ୍ୱାବଧାରକ ରୂପେ କାର୍ଯ୍ୟ କରି ଅମ୍ଭମାନଙ୍କର ବିଶେଷ ଭକ୍ତି ଓ ଧନ୍ୟବାଦର ପାତ୍ର ହୋଇଅଛନ୍ତି । ଅତ୍ରତ୍ୟ କଲେଜ ହସପିଟଲର ଡାକ୍ତର ଶ୍ରୀଯୁକ୍ତ ବାବୁ ବାସୁଦେବ କର ମହାଶୟ ଛାତ୍ରାବାସସ୍ଥ ବ୍ରାହ୍ମଣବାଳକ ମାନଙ୍କର ଜଣେ ପରମ ବନ୍ଧୁ ଏବଂ ସମିତିର ଜଣେ କୃତୀ ସଭ୍ୟ । ଏ ମହାଶୟ ଅବୈତନିକ ଭାବେ ଛାତ୍ରାବାସର ନିୟମିତ ଚିକିତ୍ସକ ପଦ ଗ୍ରହଣ କରି ସ୍ୱତଃ ପ୍ରବୃତ୍ତି କ୍ରମେ ନାନା ଘଟନାରେ ନିଃସ୍ୱାର୍ଥ-

ପରଚାର ଯେ ଜ୍ୱଳନ୍ତ ଉଦାହରଣ ଦେଖାଇ ଅଛନ୍ତି ତାହା ସମିତ କଦାପି ଭୁଲି ପାରବେ ନାହିଁ । ସମିତର ଧନ୍ୟବାଦ ଓ କୃତଜ୍ଞତା ଯେତେ ଗଭୀର ଓ ଆନ୍ତରିକ ହେଉ ନା କାହିଁକି ତାଙ୍କ କାର୍ଯ୍ୟ ଲାଗି ତାହା କଦାପି ଯଥେଷ୍ଟ ନୁହେ । ସ୍ଥାନୀୟ ବ୍ୟକ୍ତିଙ୍କ ବ୍ୟତୀତ କେତେକ ଆଗନ୍ତୁକ କୃତବିଦ୍ୟ ସଦାଶୟ ବ୍ୟକ୍ତି ଛାତ୍ରାବାସକୁ ସାମୟିକ ଶୁଭ-ଗମନ ଏବଂ ପରିଦର୍ଶନ କରି ଆମ୍ଭମାନଙ୍କୁ ବିଶେଷ ଅନୁଗୃହୀତ କରିଅଛନ୍ତି । କବିବର ରାୟ ରାଧାନାଥ ରାୟ ବାହାଦୁର ଥରେ ଏଠାରେ ପଦାର୍ପଣ କରି ଏହାକୁ "ତପୋବନ„ ଆଖ୍ୟା ପ୍ରଦାନ କରିଅଛନ୍ତି ମାନନୀୟ ବାବୁ ଶ୍ରୀ ମଧୁସୂଦନ ଦାସ ସି, ଆଇ ଇ ମହୋଦୟ ମଧ୍ୟ ଏଠାକୁ ଥରେ ଶୁଭଗମନ କରି ଆନ୍ତରିକ ଆନନ୍ଦ ପ୍ରକାଶ କରିଥିଲେ । କଲିକତା ସଂସ୍କୃତ କଲେଜର ପ୍ରଧାନ ଅଧ୍ୟକ୍ଷ ଶ୍ରୀଯୁକ୍ତ ହରପ୍ରସାଦ ଶାସ୍ତ୍ରୀ ଏବଂ ଓଡ଼ିଶା ଶିକ୍ଷା ବିଭାଗର ମାନନୀୟ ଇନ୍‌ସ୍ପେକ୍ଟର ସାହେବ ମହୋ-ଦୟ ଏଠାକୁ ଶୁଭାଗମନ କରି ଅତ୍ୟନ୍ତ ଆନନ୍ଦ ପ୍ରକାଶ କରିଥିଲେ । ଗତ ବଡ଼ଦିନ ଛୁଟି ସମୟରେ ସମିତର ତିନୋଟି ସଭ୍ୟଙ୍କର ଉନ୍ନକାଣ ବଙ୍ଗୀୟ ବନ୍ଧୁ ବାବୁ ଶ୍ରୀ କୃଷ୍ଣକୁମାର ମଜୁମଦାର ବି, ଏ ବାବୁ ଶ୍ରୀ ଶାରଦା ପ୍ରସନ୍ନ ପାଲ ଏମ୍, ଏ ଏବଂ ବାବୁ ଶ୍ରୀ ଯୋଗେଶଚନ୍ଦ୍ର ଦେ ଏକରାତ୍ର ମାତ୍ର ଏଠାରେ ଅବସ୍ଥାନ କରି ଲେଖିଅଛନ୍ତି ;

"The management of the Hostel is laudable .The boarders are devoted to their studies. They are true types of Brahmin students. They may be fairly expected to have a golden future before them. ଛାତ୍ରାବାସର ବନ୍ଦୋବସ୍ତ ପ୍ରଶଂସନୀୟ । ଛାତ୍ରମାନେ ଅଧ୍ୟୟନରେ ବିଶେଷ ମନଯୋଗୀ । ସେମାନେ ବ୍ରାହ୍ମଣ ଛାତ୍ରର ପ୍ରକୃତ ଆଦର୍ଶ । ସେମାନେ ଭବିଷ୍ୟ ଉନ୍ନତ ହଉବେ ବୋଲି ଅମ୍ଭେମାନେ ଆଶାକରୁଁ "

ଏହି ଛାତ୍ରାବାସରେ ରହିବା ଲାଗି ଛାତ୍ରମାନଙ୍କର ଏପରି ଆଗ୍ରହାତିଶ ଅଗ୍ରହ ଦେଖାଯାଉଅଛି ଯେ ବର୍ତ୍ତମାନ ଅନ୍ତତଃ ଅଧିକ ଗୃହର ଅବ-

ଶ୍ୟକତା ଘଟିଅଛି । କିନ୍ତୁ ସମିତିର କ୍ଷୀଣ ଅର୍ଥ ବଳ ବିବେଚନାରେ ନିକଟରେ ଗୃହ ନିର୍ମାଣର ସମ୍ଭାବନା ନାହିଁ । ଯାତ୍ରୀମାନଙ୍କ ଯୋଗୁଁ ଲିଜ୍‌ହାଉସ ନିୟମ ଏଠାରେ ବଡ଼ ପ୍ରବଳ । ତେଣୁ ଛାତ୍ରାବାସୋପଯୋଗୀ ଘରର ଏକାନ୍ତ ଅଭାବ । ବିଶେଷତଃ ବିଶ୍ୱବିଦ୍ୟାଳୟର ଛାତ୍ରାବାସ ନିୟମାନୁସାରେ ତାହାର ପ୍ରୟୋଜନ ଅତ୍ୟନ୍ତ ଅଧିକ । ଏହି ସକଳ ଦୃଷ୍ଟିରେ ଆମ୍ଭେମାନେ ଆଶାକରୁଁ ସହୃଦୟ ସାଧାରଣ ବ୍ୟକ୍ତିମାନେ ଏ ଛାତ୍ରାବାସ ପ୍ରତି ସଦୟ ଦୃଷ୍ଟି ନିକ୍ଷେପ କରିବେ ।

ସାଧାରଣ କାର୍ଯ୍ୟରେ ଯୋଗଦାନ—

ଏସମିତିର କେତେଙ୍କ ସଭ୍ୟ ସମୟସମୟରେ ମଫସଲର ଗ୍ରାମମାନଙ୍କୁ ଯାଇ ସାଧାରଣଙ୍କୁ କୃଷି, ବାଣିଜ୍ୟ, ଶିକ୍ଷା, ବିଶେଷତଃ ସ୍ତ୍ରୀ ଶିକ୍ଷା—ଧର୍ମ, ସଦାଚାର ପ୍ରଭୃତି ବିଷୟରେ ଉପଦେଶ ଦେଇ ଥାନ୍ତି । ସଂସ୍କୃତଶିକ୍ଷାର ବିସ୍ତାର ଲାଗି ଏ ସମିତିର କେତେକ ପ୍ରଧାନ ସଦସ୍ୟଙ୍କ ଯତ୍ନରେ ବିଭାଗୀୟ ଡିରେକ୍ଟର ସାହେବଙ୍କ ନିକଟରେ ଏକ ଆବେଦନ ହୋଇଥିଲା । ସୁଖର ବିଷୟ ଯେ ସାହେବ ମହୋଦୟ ଏ ଜିଲାରେ ୪ ଗୋଟି ଟୋଲ ହେବାର ସ୍ଥିର କରି ସ୍ଥାନୀୟ ସାହାଯ୍ୟ ଲୋଡଥିଛନ୍ତି । ଆଶାକରୁଁ ଆମ୍ଭମାନଙ୍କ ପ୍ରାର୍ଥନା ଶୀଘ୍ର ଫଳବତୀ ହେବ ।

ସାହାଯ୍ୟଦାନ—ଗତ ୪ ବର୍ଷ ମଧ୍ୟରେ ୧୫ ଜଣ ଛାତ୍ରଙ୍କୁ ସାହାଯ୍ୟ ଦିଆ ଯାଇଥିବାରି ୪ର୍ଥ ବାର୍ଷିକ ବିବରଣୀରେ ପ୍ରକାଶିତ ହୋଇଥିଲା । ବର୍ତ୍ତମାନବର୍ଷରେ ୯ ଜଣ ଛାତ୍ରଙ୍କୁ ସାହାଯ୍ୟଦିଆ ଯାଉଅଛି । ସଂସ୍କୃତ ବିଷୟରେ ୩ ଜଣଙ୍କ ମଧ୍ୟରୁ ୨ ଜଣ ବୀରବଲଭଦ୍ରପୁର ଏବଂ ବୀର ରାମଚନ୍ଦ୍ରପୁର ଶାସନସ୍ଥ ଟୋଲରେ ଅଧ୍ୟୟନ କରନ୍ତି । ଏବଂ ଅନ୍ୟ ଜଣେ ହିନ୍ଦୁ ଆୟୁର୍ବେଦୀୟ ଶାସ୍ତ୍ର ଶିକ୍ଷା କରନ୍ତି ।

ଇଂରାଜୀ—ବିଷୟରେ ସାହାଯ୍ୟପ୍ରାପ୍ତ ୩ ଜଣ ଛାତ୍ର ଏଠାର ଜିଲାସ୍କୁଲରେ ଅଧ୍ୟୟନ କରନ୍ତି ।

ମାତୃଭାଷା—ମଧ୍ୟଇଂରାଜୀବିଦ୍ୟାଳୟରେ ପଢୁଥିବା ୩ ଜଣ ଛାତ୍ରଙ୍କ, ବେତନ ଓ ପୁସ୍ତକାଦି ସାହାଯ୍ୟ କରାଯାଏ ।

ଆୟ ବ୍ୟୟର ହିସାବ—

| | |
|---|---|
| ଆୟ—ଗତବର୍ଷ ଶେଷସୁଦ୍ଧା ସମିତି ହସ୍ତରେ ଗଚ୍ଛିତ | ଟ ୪୦୮।୯୫ |
| ବର୍ତ୍ତମାନବର୍ଷରେ ବାର୍ଷିକ ଚାନ୍ଦା | ଟ ୧୯୬/୧୦ |
| „ „ ଏକକାଳୀନ „ | ଟ ୩୧୧୧ |
| ମୁଷ୍ଟିଭିକ୍ଷାରୁ ସଂଗୃହୀତ | ଟ ୧୦୪।/୮୫ |
| ଗଚ୍ଛିତ ଟଙ୍କାରୁ ଆୟ | ଟ ୭୨।/୨ |
| ଅତିରିକ୍ତ ଆୟ | ଟ ୪।/୬ |
| ମୋଟ | ଟ ୧୦୮୩/୭ |

ବ୍ୟୟ—

| | |
|---|---|
| ବର୍ତ୍ତମାନବର୍ଷରେ ସାହାଯ୍ୟଦାନରେ | ଟ ୧୫୦୧ |
| ଛାତ୍ରାବାସର କୂପାଦି ବ୍ୟୟରେ | ଟ ୪୭।/୩ |
| ସମିତିସକାଶେ ଗୋଟିଏ ରବରମୋହର ଡାକଖର୍ଚ୍ଚା ଏବଂ କାଗଜପତ୍ରାଦିରେ | ଟ ୧୭।୮୫ |
| ମୁଷ୍ଟିଭିକ୍ଷାସଂଗ୍ରହରେ ବ୍ୟୟ | ଟ ୧୯।/୨ |
| ଛାତ୍ରାବାସର ଗ୍ଲାସ ଓ ଟାକ୍ସ୍ଆଦି | ଟ ୬୮। |
| ଗତବର୍ଷ ବାର୍ଷିକ ରିପୋର୍ଟଆଦି ଛପାଖର୍ଚ୍ଚା | ଟ ୨୭। |
| ଛାତ୍ରାବାସର ମରାମତି | ଟ ୨୩।୮। |
| ଛାତ୍ରାବାସନିମନ୍ତେ ସମ୍ବାଦପତ୍ରର ବାର୍ଷିକମୂଲ୍ୟ | ଟ ୩/ |
| ମୋଟ | ଟ ୩୩୭।/୨ |

| | |
|---|---|
| ଏତଦ୍ବାରା ଜମା | ଟ ୧୦୮୩/୭ ରୁ |
| ଖରଚ | ଟ ୩୩୭।/୨ ବାଦ |
| ଅବଶିଷ୍ଟ ସମିତିଙ୍କନାମରେ ଜମା | ଟ ୭୪୬।୫ |

ସଭ୍ୟସଂଖ୍ୟା—ଗତବର୍ଷ ଶେଷରେ ସଭ୍ୟ ସଂଖ୍ୟା ୧୬୦ ଥିଲା ।

ବର୍ତ୍ତିତ ବର୍ଷରେ ୩୦ ଜଣଙ୍କର ନାମ କର୍ତ୍ତିତ ହୋଇଅଛି ଏବଂ ୩୫ ଜଣ ନୂତନ ଗ୍ରାହକାଙ୍କର ନାମ ସଂଯୁକ୍ତ ହୋଇ ବର୍ତ୍ତମାନ ମୋଟ ସଭ୍ୟସଂଖ୍ୟା ଜ ୧୬୫ ଣ ମାତ୍ର ରହିଅଛି ।

କାର୍ଯ୍ୟନିର୍ବାହକାସମିତି—କାର୍ଯ୍ୟନିର୍ବାହକାସମିତିର ସଭ୍ୟ ତାଲିକା ଗତବର୍ଷ ବିବରଣୀରେ ପ୍ରକାଶିତ ହୋଇଥିଲା । ଉକ୍ତ ତାଲିକାରେ ପୁନର୍ବାର ଏବର୍ଷ ଜ ୫ ଣଙ୍କ ନାମ ସଂଯୁକ୍ତ ହୋଇଅଛି । ଏବଂ ତନ୍ମଧ୍ୟରୁ ଶ୍ରୀଯୁକ୍ତ ବାବୁ ଲୋକନାଥ ରଥ ମହାଶୟ କୋଷାଧ୍ୟକ୍ଷ ପଦରେ ନିଯୁକ୍ତ ହୋଇଅଛନ୍ତି । ନିମ୍ନରେ ଏବର୍ଷ କାର୍ଯ୍ୟନିର୍ବାହକା ସମିତିର ସଭ୍ୟମାନଙ୍କର ନାମ ପ୍ରଦତ୍ତ ହେଲା ।

ଶ୍ରୀଯୁକ୍ତ ପଣ୍ଡିତ ସଦାଶିବ ମିଶ୍ର ସଭାପତି
„ ମିତ୍ରୁମିଶ୍ର ସହକାରୀ ସଭାପତି ।
„ ରାମଚନ୍ଦ୍ର ଦାଶ ତତ୍ତ୍ୱାବଧାରକ ।
„ କାଶୀନାଥ ମହାପାତ୍ର ସମ୍ପାଦକ ।
„ ବାସୁଦେବ ରଥ କାବ୍ୟତୀର୍ଥ ସହକାରୀ ସମ୍ପାଦକ ।
ଶ୍ରୀଯୁକ୍ତ ଲୋକନାଥ ରଥ କୋଷାଧ୍ୟକ୍ଷ ।

„ ପଣ୍ଡିତ ଯୋଗେନ୍ଦ୍ର ମିଶ୍ର କାବ୍ୟବିଶାରଦ
„ ଚିନ୍ତାମଣି କର
„ ପରମାନନ୍ଦ ମିଶ୍ର
„ ବାସୁଦେବ କର
„ ସୁଦର୍ଶନ ନନ୍ଦ
„ ମାର୍କଣ୍ଡେୟ ରଥ
„ ଜଗନ୍ନାଥ ରଥ
„ ମଧୁସୂଦନ ପଣ୍ଡା
„ ବଳଭଦ୍ର ମିଶ୍ର
„ ଗୋପାଳ ହୋତା
„ ପଣ୍ଡିତ ଜୟକୃଷ୍ଣ ମିଶ୍ର କାବ୍ୟତୀର୍ଥ
„ ଗୋପୀନାଥ ମିଶ୍ର

} ସଭ୍ୟ.

## ପରିଶିଷ୍ଟ ।

### ଉତ୍କଳ ବ୍ରାହ୍ମଣସମିତି ଛାତ୍ରାବାସର ନିୟମାବଳୀ ।

୧— ଉତ୍କଳ ବ୍ରାହ୍ମଣସମିତି ପକ୍ଷରୁ ପୁରୀ ନଗରରେ ଯେଉଁ ଛାତ୍ରାବାସ ପ୍ରସ୍ତୁତ ହେଲା ପୁରୀ ବ୍ରାହ୍ମଣସମିତିର ସଦସ୍ୟମାନେ ଏଥିରେ ସ୍ୱତ୍ୱାଧିକାରୀ ହେଲେ ଓ ହେଉଥିବେ ।

୨— ପୂର୍ବସ୍ଥିତ ବ୍ରାହ୍ମଣସମିତିର କାର୍ଯ୍ୟନିର୍ବାହକା ସମିତିର ମେମ୍ବରମାନେ ଏହି ଛାତ୍ରାବାସର ପରିଦର୍ଶକ ଓ ସେଥିମଧ୍ୟରୁ କମେଟିର ମନୋନୀତ ଜଣେ ମେମ୍ବର ତତ୍ତ୍ୱାବଧାରକ ନିଯୁକ୍ତ ହେବେ ।

୩ । ପ୍ରତି ବର୍ଷାନ୍ତରେ ଜଣେ ଲେଖାଏଁ ଛାତ୍ରରହିବାର ଉଚିତସଂଖ୍ୟା ସ୍ଥିର ରହିଲା ।

୪— ଛାତ୍ରାବାସର ଖଣ୍ଡିଏ ଦର୍ଶକାଭିପ୍ରାୟ ବହି ଓ ଖଣ୍ଡିଏ ରେଜିଷ୍ଟର ବହି ରହିବ । ପ୍ରତ୍ୟହ ସାୟଂ ଓ ପ୍ରାତଃକାଳରେ ତତ୍ତ୍ୱାବଧାରକ ଛାତ୍ରମାନଙ୍କ ଉପସ୍ଥାନ ନେବେ ।

୫ — ପରିଦର୍ଶକମାନେ ସାମୟିକ ପରିଦର୍ଶନ କରି ଦର୍ଶକାଭିପ୍ରାୟ ବହିରେ ନିଜ ନିଜ ମନ୍ତବ୍ୟ ପ୍ରକାଶ କରିପାରିବେ । କୌଣସି ଆଗନ୍ତୁକ କିମ୍ବା ସ୍ଥାନୀୟ ଭଦ୍ରବ୍ୟକ୍ତିଙ୍କୁ ସମୟେ ସମୟେ ପରିଦର୍ଶନଲାଗି ଅନୁରୋଧ କରାଯିବ ଏବଂ ଉକ୍ତ ଦର୍ଶକାଭିପ୍ରାୟ ବହିରେ ସେମାନେ ନିଜ ନିଜ ମତ ଲିପିବଦ୍ଧ କରିବେ ।

୬ — ସୁବିଧାଥିଲେ ଅନ୍ୟସମ୍ପ୍ରଦାୟର ଛାତ୍ରମାନେ ଏହି ଛାତ୍ରାବାସରେ ରହିବାର ଅନୁମତି ପାଇପାରିବେ । ଏଥି ଅନୁମତି ଦେବାର ଭାର ମ୍ୟାନେଜିଂ କମେଟିହସ୍ତରେ ରହିଲା ।

୭— ଛାତ୍ରମାନେ ପ୍ରତ୍ୟହ ସନ୍ଧ୍ୟା ଘଣ୍ଟା ପରେ ବାହାରେ ରହିପାରିବେ ନାହିଁ । ବିଶେଷ ପ୍ରୟୋଜନ ପଡ଼ିଲେ ତତ୍ତ୍ୱାବଧାରକଙ୍କ ଅନୁମତି ନେବାକୁ ହେବ ।

୮— କୌଣସି ଛାତ୍ରର ଅଭିଭାବକ ବା ବନ୍ଧୁ ତତ୍ତ୍ୱାବଧାରକଙ୍କ ଅନୁମତ୍ୟନୁସାରେ ବର୍ଜନ ରହିପାରିବେ । ଉପଯୁକ୍ତ କାରଣ ଅଭାବରେ କେହି ଅନୁମତି ପାଇ ପାରିବେ ନାହିଁ ।

୯— ସମସ୍ତ ଛାତ୍ର ଅତି ପ୍ରତ୍ୟୁଷରେ ଶଯ୍ୟାତ୍ୟାଗକରି ପ୍ରାତଃକୃତ୍ୟାଦି ଅନ୍ତେ ନିଜ ନିଜ ଅଧ୍ୟୟନ କାର୍ଯ୍ୟରେ ତତ୍ପର ହେବେ ।

୧୦— ଯାହାଙ୍କର ଚରିତ୍ରରେ କୌଣସି ଦୋଷ ଲକ୍ଷିତ ହେବ ସେ ଅବିଳମ୍ବେ ଛାତ୍ରାବାସରୁ ତାଡ଼ିତ ହେବେ ।

୧୧— ପଶା, ତାସ ପ୍ରଭୃତି ଖେଳ ଏବଂ ଅଶ୍ଳୀଳ ସଙ୍ଗୀତ ଗାନ ଇତ୍ୟାଦି ଚରିତ୍ରଗତ ଦୋଷ ବୋଲି ଧରାଯିବ ।

୧୨— ପଢ଼ିବା ସମୟରେ ଅର୍ଥାତ୍ ସକାଳ ୬ଘଣ୍ଟା ଠାରୁ ୯ଘଣ୍ଟା ଏବଂ ସନ୍ଧ୍ୟା ୭ଘଣ୍ଟା ଠାରୁ ୧୦ଘଣ୍ଟା ମଧ୍ୟରେ କାରଣବ୍ୟତିରେକେ କେହି କାହାର ଘରକୁ ଯାଇ ପାରିବେନାହିଁ କିମ୍ବା କାହାକୁ ଅନ୍ୟମନସ୍କ କରିପାରିବେନାହିଁ ।

୧୩— ବୋର୍ଡ଼ିଙ୍ଗ ବାହାରେ ଅର୍ଥାତ୍ ସ୍କୁଲ କିମ୍ବା ଅନ୍ୟ ସ୍ଥାନରେ ଚରିତ୍ରଗତ ଦୋଷ ନିମନ୍ତେ ବୋର୍ଡିଙ୍ଗର ନିୟମ ଏବଂ ଶାସନ ଖଟିବ ।

୧୪— କାରଣ ନ ଦେଖାଇ ଏବଂ ଅନୁମତି ନ ନେଇ କେହି ଦିନେ ସୁଦ୍ଧା ଗ୍ରାମକୁ କିମ୍ବା ସ୍ଥାନାନ୍ତରକୁ ଯାଇ ପାରିବେ ନାହିଁ ।

୧୫— ସମିତିର ଛାତ୍ରାବାସ ସୀମା ମଧ୍ୟରେ ପ୍ରତିଷ୍ଠିତ ପ୍ରତ୍ୟହ ସନ୍ଧ୍ୟା ବା ପ୍ରାତଃକାଳରେ ସ୍ୱାସ୍ଥ୍ୟୋନ୍ନତି ଓ କୃଷିଶିକ୍ଷା ଅଭିପ୍ରାୟରେ ୩୦ ମିନିଟ ଲେଖାଏଁ ପରିଶ୍ରମ କରିବେ କିମ୍ବା ବ୍ୟାୟାମ କରିବେ ।

୧୬— ସମସ୍ତେ ଦୁଇ ଓଳି ସନ୍ଧ୍ୟାବନ୍ଦନା ଓ ଈଶ୍ୱର ଉପାସନା କରିବାକୁ ବାଧ୍ୟ ହେବେ ।

୧୭— କୌଣସି ଛାତ୍ର ସାଧାରଣର ଅସୁବିଧାଜନକ କୌଣସି କାର୍ଯ୍ୟ କରିବା ସର୍ବଥା ନିଷିଦ୍ଧ ।

୧୮— ଖଣ୍ଡିଏ ପରଗୃଲମ ବହି ରହିବ ଯେ ସେଥିରେ ଭତ୍ତ୍ୱା-ବଧାଇକ ପ୍ରତି ଘଟନା ଲେଖିରଖିବେ ।

୧୯— ସମସ୍ତ ଖରଚ ତତ୍ତ୍ୱାବଧାରକଙ୍କ ଆଦେଶାନୁଯାୟୀ ବ୍ୟବସ୍ଥା-ରକଷ୍ତ ହେବାକୁ ବାଧ୍ୟ ।

୨୦— ସତୁଦ୍ଦେଶ୍ୟ ନ ଥିଲେ କୌଣସିଲୋକ ଛତ୍ରାବାସ ମଧ୍ୟରେ ପ୍ରବେଶ କର ପାରବେ ନାହିଁ ।

ଭ୍ରମସଂଶୋଧନ ।

ଗତବର୍ଷ ବାର୍ଷିକ ବବରଣୀରେ ସଦାଶୟ ଦାତାମାନଙ୍କର ନାମ ଓ ଦାନର ପରମାଣ ପ୍ରକାଶରେ ଯେ ସବୁ ତ୍ରୁଟି ରହିଥିଲା ତାହା ନମ୍ନରେ ପ୍ରକାଶିତ ହେଲା ।

ଅପ୍ରକାଶିତ ।

| | | |
|---|---|---|
| ଶ୍ରୀଯୁକ୍ତ ପଣ୍ଡିତ ରୁଦ୍ରନାରାୟଣ ଷଡଙ୍ଗୀ | | ଟ ୨୧ |
| ,, ,, ଦୟାନିଧି ମିଶ୍ର ଇଃ ପଣ୍ଡିତ ବାଣପୁର | | ଟ ୨୧ |
| ,, ବାବୁ ଗୋପୀନାଥ ଦାଶ ବିଏ | | ଟ୦ । |

ପରବର୍ତ୍ତନ ।

| | | | |
|---|---|---|---|
| ଶ୍ରୀଯୁକ୍ତ । ତ । ଭୁବନେଶ୍ୱର ଦାସ ବନପୁର | ଟ ୧୧ | ସ୍ଥଳରେ | ଟ ୨୧ |
| ,, । ତ । ଶିବରାମ ଦାସ ,, | ଟ ୨୧ | ସ୍ଥଳରେ | ଟ ୧୧ |
| ,, ପଣ୍ଡିତ ଗୋପୀନାଥ ମିଶ୍ର | ଟ୦।୵ | ସ୍ଥଳରେ | ଟ୦୵ |
| ସ୍ଥାନୀୟ ପଣ୍ଡିତମଣ୍ଡଳୀ | ଟ୧୯୧ | ସ୍ଥଳରେ | ଟ ୯୧ |

ଦାନତାଲିକା—ବର୍ତ୍ତମାନବର୍ଷ ମଧ୍ୟରେ ଯେଉଁ ସଦାଶୟ ବ୍ୟକ୍ତି-ମାନେ ଏହି ସମିତିର ଉଦ୍ଦେଶ୍ୟସାଧନ ନିମନ୍ତେ ବାର୍ଷିକ ଓ ଏକକ-ଳୀନଭାବରେ ଯେପରମାଣରେ ଅର୍ଥ ସାହାଯ୍ୟ କରଅଛନ୍ତି, ସେମା-ନଙ୍କ ନାମ ଓ ଦାନର ପରମାଣ ନମ୍ନରେ ପ୍ରଦତ୍ତ ହେଲା ।

| | | |
|---|---|---|
| ଶ୍ରୀଯୁକ୍ତ ପୀତବାସ ରଥ | ସମ୍ବଲପୁର | ଟ ୦ ୵ |
| ,, ବାଳମୁକୁନ୍ଦ ହୋତା | ,, | ଟ ୦ ୵ |

| | | |
|---|---|---|
| ଶ୍ରୀଯୁକ୍ତ ମାଳି ମାହାରଣା | ଗୌଡ଼ବାଡ଼ ସାହି | ଟ ୦ ୵ |
| ,, ରାମଚନ୍ଦ୍ର ରଥ | | ଟ ୦ ୵ |
| ,, ହରିହର ଦାସ | ଶ୍ରୀରାମଚନ୍ଦ୍ରପୁର | ଟ ୦ ୵୬ |
| ,, ପ୍ରସନ୍ନକୁମାର ପୂଜାହାରୀ | ସମ୍ବଲପୁର | ଟ ୦ । |
| ,, ଦାମୋଦର ମହାପାତ୍ର | ବଣନାଥପୁର | ଟ ୦ । |
| ,, ବାସୁ ମୁଦୁଲି | ବାସେଲି ସାହି | ଟ ୦ । |
| ,, ଅନନ୍ତଚନ୍ଦ୍ର ସିଂହ | | ଟ ୦ । |
| ,, କୃପାସିନ୍ଧୁ ମିଶ୍ର | ଶ୍ରୀରାମଚନ୍ଦ୍ରପୁର | ଟ ୦ । |
| ,, ଜୟକୃଷ୍ଣ ପଟ୍ଟନାୟକ | ମାର୍କଣ୍ଡେଶ୍ୱର ସାହି | ଟ ୦ । |
| ,, ପଦ୍ମନାଭ ମିଶ୍ର | ଭୁବପୂର୍ବ ସ୍କୁଲ ସଃ ଇଃ | ଟ ୦ । |
| ,, ହାଡୁବନ୍ଧୁ ମହାନ୍ତି | ମାର୍କଣ୍ଡେଶ୍ୱର ସାହି | ଟ ୦ । |
| ,, ଜଣେ ସମ୍ମିଳବନ୍ଧୁ | | ଟ ୦ । |
| ,, ଜଗନ୍ନାଥ ଖୁଣ୍ଟିଆ | ମୁକ୍ତାର ମୋହରର | ଟ ୦ । |
| ,, ଗୋବିନ୍ଦ ଶତପଥୀ | ବେଣ୍ଟପୁର | ଟ ୦ । |
| ,, ଗୋପୀନାଥ ବାହୁଳୀପତି | ଗଉଡ଼ବାଡ଼ ସାହି | ଟ ୦ ।୬ |
| ,, ବୃନ୍ଦାବନ ପଣ୍ଡା | କାକଟପୁର | ଟ ୦ ।୵ |
| ,, ଲୋକନାଥପଟ୍ଟଯୋଷୀମହାପାତ୍ର | ଶାଃ ଦାମୋଦରପୁର | ଟ ୦ ୳ |
| ,, ହରିହର ମିଶ୍ର | ଟ୍ରେନିଂସ୍କୁଲ ପୁରୀ | ଟ ୦ ୳ |
| ,, ବାଜୁଭବନ୍ଧୁ ମିଶ୍ର | | ଟ ୦ ୳ |
| ,, ଅର୍ଜ୍ଜୁନ ସାମନ୍ତରାୟ | ମାର୍କଣ୍ଡେଶ୍ୱର ସାହି | ଟ ୦ ୳ |
| ,, ରାମଚନ୍ଦ୍ର ହଣ୍ଡାଲ | କାକଟପୁର | ଟ ୦ ୳ |
| ,, ପଣ୍ଡିତ ଗୋପୀନାଥ ଦାସ | ଭଙ୍ଗାରପୁର | ଟ ୦ ୳ |
| ,, ଯୋଗେନ୍ଦ୍ରଦାସ ଅଦର୍ଶ | ବାଳକାସ୍କୁଲ ପୁରୀ | ଟ ୦ ୳ |
| ,, ଚନ୍ଦ୍ର ଶେଖର ପାଣି | | ଟ ୦ ୳ |
| ,, ନିତ୍ୟାନନ୍ଦ ନାଗ | | ଟ ୦ ୳ |

| | | | |
|---|---|---|---|
| ଶ୍ରୀଯୁକ୍ତ | ବୈଦ୍ୟନାଥ ପଣ୍ଡା | ସମ୍ବଲପୁର | ଟ ୦ ୫ |
| ,, | ରତ୍ନାକର ଗର୍ଗବଡୁ | ଭୁବନେଶ୍ୱର | ଟ ୦ ୫ |
| ,, | ପଣ୍ଡିତ ଶ୍ୟାମସୁନ୍ଦର ରଥ କାବ୍ୟତୀର୍ଥ | | ଟ ୦ ୴ |
| ,, | ମାନଗୋବିନ୍ଦ ମିଶ୍ର ଶାସନ | ଦାମୋଦର ପୁର | ଟ ୦ ୴ |
| ,, | ବାଞ୍ଛାନିଧି ପାତ୍ର | ଉତ୍କଳ ମୋହରର | ଟ ୦ ୴୨ |
| ,, | ପଣ୍ଡିତ ଉଗ୍ରସେନ ଦାଶ | ଭଙ୍ଗାରପୁର | ଟ ୦ ୴/୨ |
| | ଜନୈକ ସମ୍ମିଳବନ୍ଧୁ | | ଟ ୧ ୲ |
| ଶ୍ରୀଯୁକ୍ତ | ଗୌରୀଚରଣ ମହାନ୍ତି | ଦୋଳମଣ୍ଡପ ସାହି ପୁରୀ | ଟ ୧ ୲ |
| ,, | ସତ୍ୟବାଦୀ ମହାନ୍ତି | ବାଲିସାହି | ଟ ୧ ୲ |
| ,, | ଜୟକୃଷ୍ଣ ଦାଶ | ଦୋଳମଣ୍ଡପ ସାହି | ଟ ୧ ୲ |
| ,, | ହରିହର ମହାପାତ୍ର | ବାସେଲିସାହି | ଟ ୧ ୲ |
| ,, | ରଘୁନାଥ ମିଶ୍ର | ,, | ଟ ୧ ୲ |
| ,, | ପଣ୍ଡା ଗୋବିନ୍ଦ ମହାପାତ୍ର | ଦୋଳମଣ୍ଡପ ସାହି | ଟ ୧ ୲ |
| ,, | ପଦ୍ମନାଭ ଶତପଥୀ | କଟକ | ଟ ୧ ୲ |
| ,, | ବାବୁ ଭଗବାନ ସେନାପତି | ବାଲିସାହି | ଟ ୧ ୲ |
| ,, | ଲୋକନାଥ ବ୍ରହ୍ମା | ଘୋଡ଼ଡିଅ | ଟ ୧ ୲ |
| ,, | ବନମାଳୀ ପତି | ବଲଙ୍ଗା | ଟ ୧ ୲ |
| ,, | ପଣ୍ଡିତ ହରିହର ରଥ | କଟକ | ଟ ୧ ୲ |
| ,, | ଭାରତଚନ୍ଦ୍ର ମହାନ୍ତି | | ଟ ୧ ୲ |
| ,, | ଖମୁ ଜୟକୃଷ୍ଣ ଖୁଣ୍ଟିଆ | ହରଚଣ୍ଡୀ ସାହି | ଟ ୧ ୲ |
| ,, | ଦିବାକର ଦାସ ସେକ୍ରେଟେରୀ | ପୁରୀ ଲିଟରେରିକ୍ଲବ | ଟ ୧ ୲ |
| ,, | ମାଧବଚନ୍ଦ୍ର ପତି | ବଲଙ୍ଗା | ଟ ୧ ୲ |
| ,, | ପୂଜା ନରସିଂହ ପଣ୍ଡା | | ଟ ୧ ୲ |
| ,, | ପଣ୍ଡିତ ରୁଦ୍ରନାରାୟଣ ଷଡ଼ଙ୍ଗୀ | ନୀଳଗିରି | ଟ ୧ ୲ |

ଶ୍ରୀଯୁକ୍ତ ମହାନ୍ତ ଜଗନ୍ନାଥ ଦାସ ନନ୍ଦନ। ମଠ ଟ ୧ ୲
,, ସପେଟ ବସ୍ନେଶ ପାତ୍ର ଟ ୧ ୲
,, ମହାଜନ ଗୋବନ୍ଦ ସାହୁ ଲକ୍ଷ୍ମୀଭଦ୍ର ଟ ୧ ୲
,, ମୂଲନାଥ କର ବାସେଲୀ ସାହି ଟ ୧ ୲
,, ପଣ୍ଡିତ କୁଳମଣି ତ୍ରିପାଠୀ ପିପିଲି ସ୍କୁଲ ଟ ୧ ୲
,, ଗୋପୀନାଥ ମିଶ୍ର ମାର୍କଣ୍ଡେଶ୍ୱର ସାହି ଟ ୧ ୲
,, କୁଞ୍ଜବିହାରୀ ହରଚଣ୍ଡୀ ସାହି ଟ ୧ ୲
,, ବାବାଜୀ ମହାପାତ୍ର ବାସେଲୀ ସାହି ଟ ୧ ୲
,, ଦାମୋଦର ମହାପାତ୍ର ହରଚଣ୍ଡୀ ସାହି ଟ ୧ ୲
,, ଗୋପୀନାଥ ପଢ଼ି ଗୁମାସ୍ତା ମହାପ୍ରକାଶ ମଠ ଟ ୧ ୲
,, ଅନନ୍ତ ମିଶ୍ର ଟ ୧ ୲
,, ପଣ୍ଡିତ ବୈଦ୍ୟନାଥ ମିଶ୍ର କାବ୍ୟତୀର୍ଥ ଟ ୧ ୲
ଶ୍ରୀଯୁକ୍ତ ଗଣେଶ୍ୱର ସାମନ୍ତରାୟ ଟ ୧୲
,, ପଣ୍ଡିତ ନାରାୟଣ ମିଶ୍ର (ବିଶ୍ୱନାଥପୁର) ଟ ୧୲
,, ,, ଅର୍ଜୁନ ଦାଶ ଶ୍ରୀରାମଚନ୍ଦ୍ରପୁର ଟ ୧୲
,, ଜଗଦ୍‌ବନ୍ଧୁ ପଟ୍ଟନାୟକ ପ୍ରେସିଡେଣ୍ଟ
କରଣ ସମିତି ପୁରୀ ଟ ୧୲
,, କୃଷ୍ଣ ମାରୁଆଡ଼ୀ ବନ୍ଧୁ ଟ ୧।
,, ବିଧୁଭୂଷଣ ବନ୍ଦ୍ୟୋପାଧ୍ୟାୟ ଟ ୧।
,, ଅନ୍ତର୍ଯ୍ୟାମୀ ପଟ୍ଟନାୟକ ମାଟିମଣ୍ଡପ ସାହି ଟ ୧।
,, ପଣ୍ଡିତ ନୀଳକଣ୍ଠ ମିଶ୍ର ଭୁବନେଶ୍ୱର ସ୍କୁଲ ଟ ୧ ୳
,, ରାମଚନ୍ଦ୍ର ମିଶ୍ର କୁଣ୍ଡେଇବେଣ୍ଟ ସାହି ଟ ୧ ୳
,, ପଣ୍ଡିତ ବାସୁଦେବ ରଥ କାବ୍ୟତୀର୍ଥ ଟ ୧୳୲
,, ମଧୁସୂଦନ ପଣ୍ଡା ଦାଣ୍ଡିମାଳ ସାହି ଟ ୧୳
,, ବାସୁଦେବ କର ଡାକ୍ତର ଟ ୧୳

ଶ୍ରୀଯୁକ୍ତ ବଳଭଦ୍ର କର — ଟ ୧<
,, ବାଲ୍‌ମେକାପ ହରଚଣ୍ଡୀସାହି — ଟ ୧<
,, ବିପିନବିହାରୀ ଗଙ୍ଗୋପାଧ୍ୟାୟ — ଟ ୧<
,, କାଳୀକୃଷ୍ଣ ପ୍ରଧାନୀ — ଟ ୧<
,, ଯୋଗେନ୍ଦ୍ରନାଥ ଦତ୍ତ ବାସେଲୀସାହି — ଟ ୧<
,, ଚୈତନପଟ୍ଟଯୋଷୀ ମହାପାତ୍ର ହରଚଣ୍ଡୀସାହି — ଟ ୧<
,, ରାମଚନ୍ଦ୍ର ତ୍ରିପାଠୀ ହାକିମପୁର ତକଲାକାନୁନଗୋ — ଟ ୧<
,, ମହନ୍ତ ରାମଜମଠ — ଟ ୧<
,, ବଣ୍ଣୁରତ୍ରିପାଠୀ — ଟ ୧<
,, ମହାଜନ ଦାଜବନ୍ଧୁ ପାତ୍ର ଦୋଳମଣ୍ଡପସାହି — ଟ ୧<
,, ରାମକୃଷ୍ଣ ପଟ୍ଟନାୟକ ଜମିଦାର ମାର୍କଣ୍ଡେଶ୍ୱରସାହି — ଟ ୧<
,, ବାବୁ ନାରାୟଣପ୍ରସାଦ ଚୁଡ଼ଙ୍ଗସାହି — ଟ ୧<
,, ହରିହର ଘୋଷ ମୋକ୍ତାର — ଟ ୧<
,, ନରସିଂହଚରଣ ମହାନ୍ତି ମାର୍କଣ୍ଡେଶ୍ୱରସାହି — ଟ ୧<
,, ଧନପତିବନ୍ଦ୍ୟୋପାଧ୍ୟାୟ ଏମ୍ ଏ ବି ଏଲ୍. — ଟ ୧<
,, ଦୟାନିଧି ଦାଶ ବି ଏ ହେଡ଼ ମାଷ୍ଟର୍. — ଟ ୧<
,, ଚୈତନ୍ୟ ପଟ୍ଟନାୟକ ଭୂଷଣ୍ଡପୁର — ଟ ୧<
,, ପଣ୍ଡିତ ଗଦାଧର ତ୍ରିପାଠୀ — ଟ ୧<
,, ଦାମୋଦର ପଣ୍ଡା ତହସିଲଦାର ପଦାନନ୍ଦପୁର — ଟ ୧<
,, ପଣ୍ଡିତ ମାଗୁଣିବ୍ରହ୍ମା କବିରାଜ — ଟ ୩<
,, ନରସିଂହମିଶ୍ର ବୀରନରସିଂହପୁର — ଟ ୧<୬
,, ପଣ୍ଡିତ ଜୟକୃଷ୍ଣମିଶ୍ର କାବ୍ୟତୀର୍ଥ — ଟ ୧/୯
,, ଜଗବନ୍ଧୁସିଂହ ଓକିଲ ପୁରୀ — ଟ ୧।
,, ପଣ୍ଡିତ କାଶୀନାଥ ମହାପାତ୍ର ପୁରୀ — ଟ ୧୳
,, ଜୟକୃଷ୍ଣ ମହାନ୍ତି ସେକ୍ରେଟେରୀ ଜଗଣସମିତି ପୁରୀ — ଟ ୧ [illegible]

ଶ୍ରୀଯୁକ୍ତ ପଣ୍ଡିତ ଯୋଗେନ୍ଦ୍ର ମିଶ୍ର କାବ୍ୟବିଶାରଦ ଟ ୵୳
,, କପିଳେଶ୍ୱର ମିଶ୍ର ସ୍ୱମଚଣ୍ଡୀସାହୀ ଟ ୩୯
,, ଗୋପୀନାଥ ମିଶ୍ର ବାଲିସାହୀ ଟ ୩୯
,, ବ୍ରଗ.ପବନ୍ଧୁ ଦାଶ ବ ଏ ଟ ୩୯
,, ଘ୍ୟାମସୁନ୍ଦର ନନ୍ଦ ମ୍ୟାନେଜର ନରସିଂହପୁର ଟ ୩୯
,, ଚନ୍ଦ୍ରାମଣିକର ପୁରୀ ଟ ୩୯
,, ମହନ୍ତ ଗୋଷ୍ଠୀ ପୂର୍ଣ୍ଣରାମାନୁଜ ଦାସ ଜ୍ରିମାଳୀମଠ ଟ ୩୯
,, ପଣ୍ଡା ରାମନାଥଗୁରୁ ଟ ୩୯
,, ମହାଜନ ନୀଳାଦ୍ରିସାହୁ ପୁରୀ ଟ ୩୯
,, ମହନ୍ତ ଅଗ୍ରସ୍ୱମଠ ଟ ୩୯
,, ପଣ୍ଡା ଯଦେଶ୍ୱର ଖୁଣ୍ଟିଆ ପୁରୀ ଟ ୩୯
,, ବାଲୁକେଶ୍ୱର ମିଶ୍ର ବ ଏ ସମ୍ବଲପୁର ଟ ୩୯
,, ବାସୁଦେବପୁରୀ ଗୋସ୍ୱାମୀ ଲକ୍ଷୀଭଦ୍ରମଠ ଟ ୩୯
,, ଲୋକନାଥରଥ ଟ ୩୵
,, ସୁଦର୍ଶନନ୍ଦ ସେକ୍ରେଟରୀ ଜଗନ୍ନାଥପ୍ରେସ ଟ ୩୵
,, ବାଞ୍ଛାନିଧିଦାଶ ଭୁବନେଶ୍ୱର ଟ ୪୯
,, ଗଣେଶମାହାପ୍ତ୍ରଅଭ ଟ ୪୯
,, ଶ୍ରୀରାମଚନ୍ଦ୍ରପୁର ଶାସନମହାଜନମାନେ ଟ ୪୳
,, ସର୍ବେଶ୍ୱର ଲିଙ୍କାରାଜ୍ୟ ଗଯ୍ଯ ଟ ୫୯
,, ଗଙ୍ଗାଧର ମହାପାତ୍ର ହରଚଣ୍ଡୀସାହୀ ଟ ୫୯
,, ଚଉଧୁରୀ ଗୋପାଳକୃଷ୍ଣଦାଶ ଜମିଦାର ଭିଙ୍ଗାରପୁର ଟ ୫୯
,, ମହନ୍ତ ମଙ୍ଗୁମଠ ପୁରୀ ଟ ୫୯
,, ମହନ୍ତ ବଡ଼ଅଖଡ଼ା ପୁରୀ ଟ ୫୯
,, ପଣ୍ଡା ଲୋକନାଥ ପ୍ରଭିହାରୀ ଟ ୫୯
,, ମଧୁସୁଦନ ମହାନ୍ତ ମୋକ୍ତାର ଟ ୫୯

ଶ୍ରୀଯୁକ୍ତ ମହନ୍ତ ସାକ୍ଷୀଗୋପାଳମଠ ଟ ୫୯
,, ମହାଜନ ଅନନ୍ତମହାନ୍ତି ଟ ୫୯
,, ହରେକୃଷ୍ଣପ୍ରତିହାରୀ ଟ ୫୯
,, ଅଧିକାରୀ ରାମକୃଷ୍ଣଦାସ ଗୋସ୍ୱାମୀ ଓଡ଼ିଅଁମଠ ଟ ୫୯
,, ଗୋପାଳଚନ୍ଦ୍ର ପ୍ରହରାଜ ବି ଏଲ୍ ଟ ୫୯
,, ରାଜକିଶୋର ଦାସ ମାନେଜର ପୁରୀମନ୍ଦର ଟ ୫୯
,, ବାସୁଦେବ ମହାପାତ୍ର ବାଲିସାହି ଟ ୬୪
,, ମହନ୍ତ ଲକ୍ଷ୍ମୀନୃସିଂହଚରଣ ରାମାନୁଜ ଦାସ କୁଗୁଡ଼ା ଟ ୬୯
,, ମଧୁସୂଦନ ଦାଶ ବି ଏ ଟ ୬୯
,, ଦମ୍ପାନଧି ରଘୁଗୁରୁମହାପାତ୍ର ଟ ୬୪
,, ଶ୍ୟାମସୁନ୍ଦର ପ୍ରତିହାରୀ ବାଲିସାହି ଟ ୭୯
,, ପୂର୍ଣ୍ଣଚନ୍ଦ୍ର ବନ୍ଦୋପାଧ୍ୟାୟ ଟ ୭୯
,, ୰ମହନ୍ତ ବଳଭଦ୍ର ଦାସ ରାଧାକାନ୍ତମଠ ଟ ୮୯
,, ରାମକୃଷ୍ଣ ମହାପାତ୍ର ପୋଲିସ ଟ ୯୯
,, ମହାଜନ ଶ୍ରୀବତ୍ସ ଶତପଥୀ ଟ ୧୦୯
,, ମହନ୍ତ ଗୋବର୍ଦ୍ଧନରାମାନୁଜଦାସ ଉତ୍ତରପାର୍ଶ୍ୱମଠ ଟ ୧୦୯
,, କୃଷ୍ଣଚନ୍ଦ୍ରପ୍ରହରାଜ ଡେପିଦାର ବାଲିଅବେଢ଼ା ଟ ୧୦୯
,, ହଳଧର ଯେନା ଟ ୧୦୯
,, ପଣ୍ଡିତ ସଦାଶିବ ମିଶ୍ର କାବ୍ୟକଣ୍ଠ ଟ ୧୦୪
,, ଭୂପତିନାଥ ମିତ୍ର ପୋଲିସ ଟ ୧୧୫
,, ବକ୍ସି ଲୋକନାଥବିଦ୍ୟାଧରମହାପାତ୍ର ଭ୍ରମରବରରାୟ ଟ ୧୨୯
,, ମହନ୍ତ ଜଗନ୍ନାଥରାମାନୁଜଦାସ ରାଘବଦାସ ମଠ ଟ ୧୨୯
,, ରାମଚନ୍ଦ୍ର ଦାଶ ଟ ୧୩୪
,, ପଣ୍ଡା ହରହରଗୁରୁ ଟ ୧୪୯
,, ମହନ୍ତ ରଘୁନନ୍ଦନରାମାନୁଜଦାସ ରାଜଗୋପାଳ ଟ ୧୬୯

ଶ୍ରୀଯୁକ୍ତ ହିତେଶ୍ୱର ମିଶ୍ର ॥୦ ୨୦୯
" ମିତ୍ରମିଶ୍ର ॥୦ ୧୦୯
" ଶ୍ରୀଶ୍ରୀ ଯୁବରାଜ ଶ୍ରୀନିବାସପଟ୍ଟଦେବ ବର୍ମ୍ମା (ମଞ୍ଜୁଷା) ୪ ୩୦୯

ଦାତାମାନଙ୍କ ନିକଟରେ ପ୍ରାର୍ଥନା ଏହି ଯେ ମୋହର ଶକ୍ତି ଅନୁସାରେ ଯଥସାଧ୍ୟ ଠିକ ହିସାବ ପ୍ରଦାନ କରିଅଛି । ଦୈବାତ୍ ଯଦି କୌଣସି ଭ୍ରମ ଲକ୍ଷିତ ହେବ କିମ୍ବା କୌଣସି ଦାତାଙ୍କର ନାମ ଧାମ ଦେଇ ନାହିଁ ଏ ଜଣାଇଲେ ଆଦର ସହିତ ଗ୍ରହଣ କରି ଭ୍ରମସଂଶୋଧନ କରିବି ।—